# ମଣିମାଣିକ
# ବିଜ୍ଞାନ ଗଳ୍ପମାଳା

ସଂକଳନ ଓ ସଂପାଦନା :
ଶ୍ରୀ ପରମାନନ୍ଦ ଅଧିକାରୀ



ଜେନା ବୁକ୍ ଷ୍ଟୋର

# ମଣିମାଣିକ ବିଜ୍ଞାନ ଗଳ୍ପମାଳା

ସଂକଳନ ଓ ସଂପାଦନା :
ଶ୍ରୀ ପରମାନନ୍ଦ ଅଧିକାରୀ
ସଂପାଦକ, **ମଣିମାଣିକ**

ପ୍ରକାଶକ :
**ଶ୍ରୀ ଗୋବିନ୍ଦ ଚରଣ ପାତ୍ର**
**ଓଡ଼ିଶା ବୁକ୍ ଷ୍ଟୋର୍**
ବିନୋଦବିହାରୀ, କଟକ—୭୫୩୦୦୨

ପ୍ରଥମ ପ୍ରକାଶ :

ମାର୍ଚ୍ଚ—୧୯୮୨
(୫ ତାରିଖ ଫଗୁଦଶମୀ ଠାରୁ ୭ ତାରିଖ ପର୍ଯ୍ୟନ୍ତ ଶ୍ରୀ ରାମଚନ୍ଦ୍ର ଭବନରେ ଅନୁଷ୍ଠିତ ମଣିମାଣିକ ବାର୍ଷିକ ଉତ୍ସବ ଉପଲକ୍ଷେ)

ମୁଦ୍ରଣ :
ବିକାଶ ପ୍ରିଣ୍ଟର୍ସ
ବାଳକୃଷ୍ଣ ରୋଡ୍, କଟକ-୭୫୩୦୦୧

**ମୂଲ୍ୟ—ବାର ଟଙ୍କା**
**ବଂଧେଇ—ପନ୍ଦର ଟଙ୍କା**



## ସମର୍ପଣ

ପରମ ଶୁଭେଚ୍ଛୁ ଭାବରେ ସତତ ଯେ ଆମକୁ ସାହିତ୍ୟ ସେବା ପାଇଁ ଅନାବିଳ ପ୍ରେରଣା ଦେଇ ସମ୍ପ୍ରାଣିତ କରିଆସିଛନ୍ତି, ସେହି ବରିଷ୍ଠ ସାହିତ୍ୟ, ସଂଗୀତ, କଳାରସିକ, ବାଗ୍ମୀ, ପ୍ରାବନ୍ଧିକ ଓ ଭକ୍ତ, ଓଡ଼ିଶା ହାଇକୋର୍ଟର ମାନ୍ୟବର ମୁଖ୍ୟ ବିଚାରପତି ଶ୍ରୀ ରଙ୍ଗନାଥ ମିଶ୍ର ମହୋଦୟଙ୍କ କରକମଳରେ·· ···

ତା ୭।୩।୮୨ ପରମାନନ୍ଦ

କଳାଶ୍ରୀ କୁଟୀର

ଯୋବ୍ରା, କଟକ-୭୫୩୦୦୩

# ବିନମ୍ର ବକ୍ତବ୍ୟ

ଆମ ଦେଶର ଅଗଣିତ ମଣିମାଣିକମାନଙ୍କ ପାଇଁ ଆଜି ଏହି 'ମଣିମାଣିକ ବିଜ୍ଞାନ ଗଳ୍ପମାଳା' ପ୍ରକାଶିତ ହେଉଛି । ଏହି 'ମଣିମାଣିକ ବିଜ୍ଞାନ ଗଳ୍ପମାଳା'ରେ ଯେଉଁ ସୁନାମଧନ୍ୟ ବୈଜ୍ଞାନିକ ଲେଖକ, ଲେଖିକା-ମାନେ ଲେଖିଛନ୍ତି, ଆମେ ସେମାନଙ୍କୁ—ବିନମ୍ର କୃତଜ୍ଞତା ଜ୍ଞାପନ କରୁଛୁ ।

ଆମେ ଜାଣୁ, ଏଇ ଧରଣର କାଳଜୟୀ ଭାସ୍ୱର ସ୍ୱାକ୍ଷରର ସାରସ୍ୱତ ସମ୍ମିଳନୀ ଦ୍ରବ୍ୟ ଅଦ୍ରବ୍ୟର ସ୍ପର୍ଶ ସେତୁ ମଧ୍ୟରେ କୋଟି ଜନଗଣମନ ମୋହିବା ପାଇଁ, ଆଗରୁ କେବେ କରି ନଥିଲୁ । ପ୍ରଫେସର ଡକ୍ଟର ଗୋକୁଳାନନ୍ଦ ମହାପାତ୍ର, ବିଜ୍ଞାନ ଏକାଡେମୀ ସଭାପତି ପ୍ରଫେସର ଡକ୍ଟର କେଶବଚନ୍ଦ୍ର ସାହୁ ଓ ଅଧ୍ୟାପକ ଦେବକାନ୍ତ ମିଶ୍ର ପ୍ରମୁଖ ବହୁ ବିଶିଷ୍ଟ ବୈଜ୍ଞାନିକ ବିଜ୍ଞାନକୁ ଜନପ୍ରିୟ କରିବା ପାଇଁ ବହୁ ରୁଚିକର, ସ୍ୱାଦ୍ୟ ଗଳ୍ପ ଲେଖିଛନ୍ତି ଓ ଲୋକପ୍ରିୟ ବିଜ୍ଞାନ ପତ୍ରିକା, ପୁସ୍ତକ ପ୍ରକାଶକରି ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଗଭୀର ଆଲୋଡ଼ନ ସୃଷ୍ଟି କରିଛନ୍ତି ।

ପ୍ରକୃତରେ ଏହି ଧରଣର ପୁସ୍ତକ ପ୍ରକାଶ କରିବାରେ ଆମର ଚିରଶ୍ରଦ୍ଧେୟ ପ୍ରଫେସର ଡକ୍ଟର ସାହୁ ଆମକୁ ଅମାପ ଅନାବିଳ ପ୍ରେରଣା ଯୋଗାଇ ଆମର ଚିରସ୍ମରଣୀୟ ହୋଇଛନ୍ତି । ବିଜ୍ଞାନ ପ୍ରଚାର ସମିତି ଓ ବିଜ୍ଞାନ ଏକାଡେମୀର କର୍ମକର୍ତ୍ତାବୃନ୍ଦଙ୍କ ଉତ୍ସାହ ଏବଂ ପ୍ରେରଣା ମଧ୍ୟ ଆମର ଚିରଦିନ ମନେ ରହିବ ।

ଆମର ଚିରନମସ୍ୟ ସାହିତ୍ୟ ଭୂଷଣ ଶ୍ରୀ ଯଦୁନାଥ ଷଡ଼ଙ୍ଗୀ, ପ୍ରଫେସର ଡକ୍ଟର ପ୍ରଫୁଲ୍ଲ କୁମାର ପଣ୍ଡା, ପଦ୍ମଭୂଷଣ ଡକ୍ଟର କାଳନ୍ଦୀ ଚରଣ ପାଣିଗ୍ରାହୀ, ପ୍ରଫେସର ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି, ବିଦ୍ୟାବିନୋଦ ପଣ୍ଡିତ ସଦାଶିବ ରଥ ଶର୍ମା ଓ ଆମର ଅନ୍ତରଙ୍ଗ ବନ୍ଧୁ 'ମାତୃଭୂମି'ର ସଂପାଦକ ଶ୍ରୀ ବିଚିତ୍ରାନନ୍ଦ କର ମହୋଦୟଙ୍କ ଅସୀମ ଅନୁପ୍ରେରଣା ପାଇଁ ମଧ୍ୟ ଆମେ କୃତଜ୍ଞ ।

'ନିନ୍ଦନ୍ତୁ ନୀତି ନିପୁଣା ଯଦିବା ସ୍ତୁବନ୍ତୁ' ସେଥିପାଇଁ ଆଦୌ ଆମର ଚିନ୍ତା ନାହିଁ । କାଳ ଭଲ ମନ୍ଦର ବିଚାର କରିବ ।

ପରିଶେଷରେ ପୁସ୍ତକ ପ୍ରକାଶକ ଶ୍ରୀ ଗୋବିନ୍ଦ ଚରଣ ପାଲଙ୍କୁ ସଶ୍ରଦ୍ଧ କୃତଜ୍ଞତା ଜଣାଉଛୁ । ଆମର ସହଧର୍ମିଣୀ ଶ୍ରୀମତୀ କଳାବତୀ ଦେବୀଙ୍କ ଶ୍ରଦ୍ଧା ଓ ସଦିଚ୍ଛା ପାଇଁ ମଧ୍ୟ ଧନ୍ୟବାଦ ଜଣାଉଛୁ ।

ଏତିକରେ ଆମର ବିନମ୍ର ବକ୍ତବ୍ୟ ଇତି ।

ସେହି ଶରଣ ରକ୍ଷଣ ମହାବାହୁ ସମସ୍ତଙ୍କର ମଙ୍ଗଳ ବିଧାନ କରନ୍ତୁ ।

ପରମାନନ୍ଦ ଅଧିକାରୀ
ତା ୭।୩।୮୨

# ସୂଚୀପତ୍ର

# ଏକ ଅଭୁଲା କାହାଣୀ

ପ୍ରଫେସର **ଡକ୍ଟର ଗୋକୁଳାନନ୍ଦ ମହାପାତ୍ର**

ଘନ ଅନ୍ଧକାର ରାତିରେ ମେଘ ନଥିବା ଆକାଶକୁ ଆମେ ଯେତେ ଥର ଅନାଉ, ଦେଖୁ, ଅସଂଖ୍ୟ ତାରା ଝାପଭଳି ଜୁଳୁ ଜୁଳୁ ହେଉଛନ୍ତି । ଏହି ତାରାଙ୍କ ସଂଖ୍ୟା ଗଣି କହି ହୁଏନା । ଖାଲି ଆକାଶର ଏ ମୁଣ୍ଡରୁ ସେ ମୁଣ୍ଡକୁ ତାରାଗୁଡ଼ିକ ସୋଟିଷ ଭଳି ବିଞ୍ଚାଡ଼ି ହୋଇ ପଡିଲା ଭଳି ଦେଖାଯାଆନ୍ତି । କିନ୍ତୁ ପ୍ରକୃତରେ ଏ ତାରାଙ୍କ ସଂଖ୍ୟା କେତେ ?

ଆଜକୁ ପ୍ରାୟ ହଜାରେ ବର୍ଷ ତଳେ ଆମ ଭାରତର ଜଣେ ବଡ଼ ଜ୍ୟୋତିଷୀଙ୍କୁ ଠିକ ଏଇ ପ୍ରଶ୍ନ ପଚରା ଯାଇଥିଲା । ସେହି ଜ୍ୟୋତିଷୀ ଥିଲେ ଜଣେ ପ୍ରଭାବଶାଳୀ ରାଜାଙ୍କ ରାଜସଭାର ଜ୍ୟୋତିଷୀ । ରାଜା ତାଙ୍କୁ ଖୁବ୍ ସମ୍ମାନ କରୁଥାନ୍ତି । ତାଙ୍କ ରହିବା ପାଇଁ ଉଆସ, ଜମିବାଡ଼ି ପ୍ରଭୃତି ଖଞ୍ଜିଦେଇ ଥାଆନ୍ତି ।

•

ଦିନେ ରାଜା ପାଟରାଣୀଙ୍କ ସହିତ ସନ୍ଧ୍ୟାବେଳେ ପ୍ରମୋଦ-ଉଦ୍ୟାନରେ ବୁଲୁଥିଲେ । ହଠାତ୍ ରାଣୀଙ୍କର କ'ଣ ଏକ ଖିଆଲ୍ ହେଲା କେଜାଣି, ରାଜାଙ୍କୁ ପଚାରିଲେ—"ମହାରାଜ ! ଆକାଶରେ ଏହି ଯେଉଁ ଅସଂଖ୍ୟ ଜ୍ୟୋତିଷ୍କ ଦେଖାଯାଉଛନ୍ତି, ସେସବୁ କ'ଣ ଗଣି ହେବନି ?"

ରାଜା କହିଲେ—"ଚେଷ୍ଟା କଲେ ନିଶ୍ଚୟ ଗଣି ହେବ । ସଂସାରରେ ମଣିଷର ଅସାଧ୍ୟ କିଛି ନାହିଁ ।"

ଏଥର ରାଣୀ ଉଠି ବସିଲେ । ସତକୁ ସତ ଆକାଶକୁ ଆଙ୍ଗୁଳି ଦେଖାଇ ତାରାଙ୍କୁ ଗଣିବାକୁ ଲାଗିଲେ । ହେଲେ ତାରାଙ୍କୁ ଗଣି ପାରୁଛନ୍ତି

ବା କେମିତି ? କେଉଁଆଡୁ ଆରମ୍ଭ କରିବେ ? ନିଜ ଅସାମର୍ଥ୍ୟ ପ୍ରକାଶ କରି କହିଲେ—"ମହାରାଜ ମୋ ଦ୍ୱାରା ହେବନି । ଆପଣ ଚେଷ୍ଟା କରନ୍ତୁ ।"

ରାଣୀ ଯେତେବେଳେ ଛୋଟ ପିଲାଙ୍କ ଭଳି ଆକାଶରେ ତାରାଙ୍କୁ ଗଣୁ ଥିଲେ, ରାଜା ମନେ ମନେ ହସୁଥିଲେ । କହିଲେ—"ଦେଖ ରାଣୀ ତାରାଙ୍କୁ ଗଣି ସେମାନଙ୍କ ସଂଖ୍ୟା ସ୍ଥିର କରିବା ଆମ ଶକ୍ତି ବାହାରେ । ଆମ ରାଜ-ଜ୍ୟୋତିଷୀଙ୍କୁ ପଚାରିଲେ ଜଣା ପଡ଼ିବ, ତାରାଙ୍କୁ ପୂର୍ବରୁ କୌଣସି ଜ୍ୟୋତିଷି ଗଣି ସେମାନଙ୍କ ସଂଖ୍ୟା ନିର୍ଦ୍ଧାରଣ କରିଛନ୍ତି କି ନାହିଁ । ତା' ନ ହୋଇଥିଲେ ଏହି ତାରାଙ୍କୁ ଗଣିବାର ପଦ୍ଧତି ଆମ ଜ୍ୟୋତିଷୀଙ୍କୁ ଜଣାଥିବ । ସେ ଏକା ଏହି ପ୍ରଶ୍ନର ସମାଧାନ କରି ପାରିବେ ।"

ତହିଁ ପରଦିନ ରାଜସଭା ବସିଥାଏ । ମନ୍ତ୍ରୀ, ମହାମନ୍ତ୍ରୀ, ସେନାପତିମାନେ ସମସ୍ତେ ଯେଝା ସ୍ଥାନରେ ବସିଥାନ୍ତି । ରାଜା ରାଜକାର୍ଯ୍ୟ ବନ୍ଦ କରିଦେଇ ଜ୍ୟୋତିଷୀଙ୍କୁ ଲକ୍ଷ୍ୟ କରି ପଚାରିଲେ—"ଜ୍ୟୋତିଷୀ ମହାଶୟ ! ଗଣନା କରି ଆକାଶରେ ଆଖିକୁ ଦିଶୁଥିବା ତାରାଙ୍କ ସଂଖ୍ୟା କେତେ କହିପାରିବେ କି ?"

ଜ୍ୟୋତିଷୀ ବଡ଼ ଅଡୁଆରେ ପଡ଼ିଲେ । ଏଭଳି ଅସମ୍ଭବ ପ୍ରଶ୍ନର କ'ଣ ବା ସେ ଉତ୍ତର ଦେବେ ? ଥତମତ ହୋଇ କହିଲେ—"ମହାରାଜ, ଏତେବଡ଼ କଠିନ ପ୍ରଶ୍ନର ଉତ୍ତର କ'ଣ ସଙ୍ଗେ ସଙ୍ଗେ ଦେଇହେବ ? ବିଭିନ୍ନ ଜ୍ୟୋତିଷଶାସ୍ତ୍ର ଆଲୋଚନା ନ କଲେ ପର୍ଯ୍ୟନ୍ତ ଆପଣଙ୍କ ପ୍ରଶ୍ନର ଠିକ୍ ଉତ୍ତର ଦେବା ସମ୍ଭବ ନୁହେଁ !"

ଜ୍ୟୋତିଷୀଙ୍କ କଥା ରାଜାଙ୍କ ମନକୁ ପାଇଗଲା । ସେ ଜ୍ୟୋତିଷୀଙ୍କୁ ସାତ ଦିନ ସମୟ ଦେଲେ । ଜ୍ୟୋତିଷୀ ଶାସ୍ତ୍ର ଅନୁସାରେ ଗଣନା କରି ଆକାଶରେ ଥିବା ନକ୍ଷତ୍ରଙ୍କ ସଂଖ୍ୟା ସାତ ଦିନ ମଧ୍ୟରେ କହି ନ ପାରିଲେ ତାଙ୍କୁ ରାଜ-ଜ୍ୟୋତିଷୀ ପଦ ଛାଡ଼ିବା ସଙ୍ଗେ ସଙ୍ଗେ ରାଜ୍ୟ ଛାଡ଼ି ଚାଲିଯିବାକୁ ପଡ଼ିବ ବୋଲି ମଧ୍ୟ ଆଦେଶ ଦେଲେ ।

ଜ୍ୟୋତିଷୀଙ୍କ ମୁଣ୍ଡରେ ବଜ୍ର ପଡ଼ିଲା । କ'ଣ କରିବେ ସେ ! ଘରକୁ ଆସି ତାଙ୍କ ଘରର ଯେତେ ଜ୍ୟୋତିଷ ଶାସ୍ତ୍ର, ପୋଥି ଆଦି ଥିଲା, ସେ ସବୁକୁ ଘାଣ୍ଟି ଉତ୍ତର ପାଇବାକୁ ଚେଷ୍ଟା କଲେ । କିନ୍ତୁ ଦିନସାରା ଘାଣ୍ଟି ଘାଣ୍ଟି ନିରାଶ ହେଲେ । ବଡ଼ ମନ କଷ୍ଟରେ ଦିନ କାଟିବାକୁ ଲାଗିଲେ । ଦେଖୁଁ ଦେଖୁଁ ସାତ ଦିନ ଗତ ହେବାକୁ ବସିଲା ।

ଜ୍ୟୋତିଷୀଙ୍କର ବୋହୂଟି ଖୁବ୍ ବୁଦ୍ଧିମତୀ । ସେ ଶ୍ୱଶୁରଙ୍କୁ ଏତେ କେତେ ଦିନ ଚିନ୍ତିତ ଥିବାର ଦେଖି ତାଙ୍କୁ ଚିନ୍ତାର କାରଣ ପଚାରିଲେ । ଜ୍ୟୋତିଷୀ ବା ବୋହୂକୁ କ'ଣ କହିବେ ? ତେବେ ବୋହୂ ବହୁତ ଜିଦ୍ କଲାରୁ କହିଲେ—"ତୋତେ ଆଉ କ'ଣ କହିବି ମା ! ଆମର ଏ ରାଜ୍ୟରେ ବସ ବାସ ଆଉ ବେଶୀ ଦିନ ନାହିଁ । ଆମକୁ ଏ ରାଜ୍ୟରୁ ଆଉ ଅଳ୍ପ ଦିନ ଭିତରେ ବିଦାୟ ନେବାକୁ ପଡ଼ିବ ମା ! ରାଜା ମୋତେ ପଚାରିଛନ୍ତି, ଆକାଶରେ କେତେ ତାରା ଅଛନ୍ତି, ଗଣି କହିବା ପାଇଁ । ଏହା କେଡ଼େ ବଡ଼ କଠିନ କାମ ତୁ ତ ଭାବି ପାରୁଥିବୁ । କେହି କ'ଣ କେବେ ଗଣି କହିପାରିବ ଆକାଶରେ କେତେ ତାରା ଅଛନ୍ତି ?"

ଶ୍ୱଶୁରଙ୍କ ପ୍ରଶ୍ନରେ ବୋହୂଟି ହସିଲା । କହିଲା—"ବାପା ! ଏ ପ୍ରଶ୍ନର ଉତ୍ତର ଦେବାର କଷ୍ଟ କେଉଁଠି ? ରାଜା ଅବୁଝା । ଯାହା ମୁଣ୍ଡକୁ ପଶିଲା ପଚାରିଦେଲେ ଆପଣ ସେମିତି ଉତ୍ତର ଦେଇ ଦିଅନ୍ତୁ । ରାଜା କ'ଣ ସତରେ ଆକାଶରେ ତାରା ଗୁଡ଼ିକୁ ଗଣି ଆପଣ ଠିକ୍ କହୁଛନ୍ତି କି ଭୁଲ୍ କହୁଛନ୍ତି ପରୀକ୍ଷା କରି ଜାଣିପାରିବେ ?"

—"ତୁ ଠିକ୍ କ'ଣ କହିବାକୁ ଚାହୁଁଛୁ ମୁଁ ବୁଝି ପାରୁନି ମା !"

—"ନାଇଁ ବାପା, ଆପଣ ବ୍ୟସ୍ତ ହୁଅନ୍ତୁନି । ମୁଁ ଏଇ ପ୍ରଶ୍ନର ଯଥାର୍ଥ ଉତ୍ତର ଦେଇପାରିବି । ଆପଣ ସେହି ଉତ୍ତରଟି ନେଇ ରାଜାଙ୍କୁ କୁହନ୍ତୁ । ରାଜା ଠିକ୍ ଉତ୍ତର ପାଇଯିବେ । ତାଙ୍କ ପ୍ରଶ୍ନର ସମାଧାନ ହୋଇଯିବ ।"

ଶ୍ୱଶୁର ଦରବାରକୁ ଯିବା ଆଗରୁ କି ଉତ୍ତର ଦେବେ ବୋହୂଟି ଶ୍ୱଶୁରଙ୍କ ଠିକଣା କରି ବୁଝାଇଦେଲା ।

ରାଜସଭା ବେଶ୍ ଜୋର୍‌ସୋର୍‌ରେ ଚାଲିଥାଏ । ଜ୍ୟୋତିଷୀ ତାଙ୍କ ଆସନରେ ବସି ବୋଧହୁଏ ଦେଇଥିବା ଉତ୍ତରକୁ ଭାବି ହେଉଥାଆନ୍ତି । ତାଙ୍କ ମନରେ ଦୁଶ୍ଚିନ୍ତା ! —"ସତେ କ'ଣ ଏହି ଉତ୍ତରରେ ରାଜା ସନ୍ତୁଷ୍ଟ ହେବେ ? ଯଦି ନ ହୁଅନ୍ତି ତେବେ ···?"

ରାଜାଙ୍କ ଦୃଷ୍ଟି ଜ୍ୟୋତିଷୀଙ୍କ ଉପରେ ପଡ଼ିଲା । ପଚାରିଲେ —"ଜ୍ୟୋତିଷୀ ମହାଶୟ ! ମୋ ପ୍ରଶ୍ନର ଯଥାର୍ଥ ଉତ୍ତର ମିଳିଲା କି ?"

—"ଆଜ୍ଞା, ମହାରାଜ ! ଆପଣଙ୍କ ପ୍ରଶ୍ନଟି ଏମିତି କି ଗୂଢ଼ ପ୍ରଶ୍ନ ଯେ ଆମର ଏତେ ଜ୍ୟୋତିଷ ଗ୍ରନ୍ଥରେ ତା'ର ଉତ୍ତର ମିଳିବନି ! ମୁଁ ସାତ ଦିନ ଧରି ଦିନ ରାତି ନ ଖାଇ - ପିଇ ଆପଣଙ୍କ ପ୍ରଶ୍ନର ଉତ୍ତର ଖୋଜୁଛି । ଉତ୍ତର ନ ପାଇଥିଲେ କ'ଣ ମୁଁ ଆଜି ପ୍ରଭୁଙ୍କ ଦରବାରକୁ ମୁହଁ ଦେଖାଇବାକୁ ଆସିଥାଆନ୍ତି ? ଏତେବେଳକୁ ମୁଁ ଏଇ ରାଜ୍ୟ ଛାଡ଼ି ଅନ୍ୟତ୍ର ଯାଇ ସାରନ୍ତିଣି ।"

—"ବଡ଼ ଆନନ୍ଦର କଥା ତାହାହେଲେ ଜ୍ୟୋତିଷ ମହାଶୟ ! ଆଜି ଆପଣଙ୍କ ଉତ୍ତର ମୋ ମନରୁ କେତେ ସଂଶୟଟାଏ ଦୂର କରିବ ।" ଏତିକି କହି ରାଜା ଉତ୍ତର ଶୁଣିବା ପାଇଁ ଚାହିଁ ରହିଲେ ।

ରାଜସଭା ପୁରାପୁରି ସ୍ତବ୍ଧ ହୋଇଗଲା । ସମସ୍ତେ ଅନାଇ ରହିଲେ ଜ୍ୟୋତିଷୀ କି ଉତ୍ତର ଦେବେ । ଜ୍ୟୋତିଷୀ ନିଜ ଉତ୍ତରକୁ ସଂସ୍କୃତ ଶ୍ଳୋକରେ ବୋଲି ତହିଁର ଗୋଟି ଗୋଟି ବ୍ୟାଖ୍ୟା କରି କହିଲେ—"ପ୍ରଭୁ ! ଆକାଶରେ ଆପଣ ଯେଉଁ ତାରା ଗୁଡ଼ିକ ଦେଖୁଛନ୍ତି, ସେହି ତାରାଗୁଡ଼ିକର ସଂଖ୍ୟା ଖୁବ୍ ବେଶୀ । ପୃଥିବୀରେ ଯେତେ ଗଛ ଅଛି ସେହି ଗଛର ପତ୍ରକୁ ସବୁ ଗଣି ସେହି ସଂଖ୍ୟା ସହିତ ପୃଥିବୀର ସବୁ ନଦୀ, ସମୁଦ୍ରର ବେଳାଭୂମିରେ ଥିବା ବାଲିକଣାର ସଂଖ୍ୟାକୁ ଗୁଣିଲେ ଯେଉଁ ସଂଖ୍ୟା ହେବ, ତାହା ହିଁ ହେଉଛି ଆକାଶରେ ଆଖିକୁ ଦିଶୁଥିବା ତାରା ସଂଖ୍ୟା ।"

ରାଜା ଜ୍ୟୋତିଷୀଙ୍କ ଉତ୍ତରଟିକୁ ମନେ ମନେ ହିସାବ କଲେ । ଗଛର ପତ୍ର ସଂଖ୍ୟା ସହିତ ସମୁଦ୍ର ବେଳାର ବାଲିକଣା ସଂଖ୍ୟାକୁ

ଗୁଣନ କଲେ ତାହା ଯେ ଏକ ବିରାଟ ସଂଖ୍ୟା ହେବ ଏଥିରେ ତାଙ୍କର ସନ୍ଦେହ ରହିଲାନ । ଉତ୍ତରଟି ରାଜାଙ୍କ ମନକୁ ବେଶ୍ ପାଇଗଲା । ସେ ଆନନ୍ଦରେ "ସାଧୁ", "ସାଧୁ" କହି ଜ୍ୟୋତିଷୀଙ୍କ ଉତ୍ତରକୁ ଯଥାର୍ଥ ସମ୍ମାନ ଦେଖାଇଲେ । ରାଜାଙ୍କ "ସାଧୁ", "ସାଧୁ" କହିବା ଦେଖି ଦରବାରର ସଭାସଦ୍‌ବର୍ଗ ଜ୍ୟୋତିଷୀଙ୍କୁ ଧନ୍ୟ ଧନ୍ୟ କଲେ ।

ରାଜା ଖୁସି ହୋଇ ଜ୍ୟୋତିଷୀଙ୍କୁ ଅନେକ ଧନରତ୍ନ ଦେଇ ବିଦାୟ ଦେଲେ ।

ଏହା ହେଲା ଏକ କାହାଣୀ ।

ଏବେ ଆଲୋଚନା କରି ଦେଖାଯାଉ ଜ୍ୟୋତିଷୀ ରାଜାଙ୍କୁ ଯେଉଁ ଉତ୍ତର ଦେଲେ ତାହା କ'ଣ ଠିକ୍ ? ପୃଥିବୀରେ ଯେତେ ଗଛ ଅଛି ସେଥିର ପତ୍ର ସଂଖ୍ୟା କେତେ ସହସ୍ର ସହସ୍ର କୋଟି ଯେ ହୋଇଥିବ ତା କଳନା କରି ହେବ ନାହିଁ । ପୃଥିବୀରେ ଯେତେ ନଦ, ନଦୀ, ସମୁଦ୍ର ଅଛି, ସେ ସବୁର ବେଳାଭୂମିରେ ତା'ଠାରୁ ଆହୁରି ଯେ କେତେ ଅଧିକ ସଂଖ୍ୟକ ବାଲି କଣିକା ଥିବ । ଏଣୁ ପତ୍ର ଗଣିବା ଓ ବାଲି-କଣିକା ଗଣିବା ତାରା ଗଣିବାଠାରୁ ଆହୁରି ଦୁରୂହ କାମ । ରାଜାଙ୍କୁ ବୋକା କରିବା ପାଇଁ ଜ୍ୟୋତିଷୀ ଏପରି ଉତ୍ତର ଦେଇଥିଲେ । ରାଜା ତ ଜାଣିଥିଲେ ତାରାଙ୍କ ସଂଖ୍ୟା ଅସଂଖ୍ୟ । ତେଣୁ ତାଙ୍କ ମନକୁ ପାଇଲାଭଳି ସଂଖ୍ୟାଟି ବତାଇ ଦେବାରୁ ରାଜା ବିଶ୍ବାସ କରିଥିବେ ।

ପ୍ରକୃତପକ୍ଷେ ଦେଖିବାକୁ ଗଲେ ଆକାଶରେ ଆଖିକୁ ଦିଶୁଥିବା ତାରାଙ୍କ ସଂଖ୍ୟା ପତ୍ର ସଂଖ୍ୟା କି ବାଲି ସଂଖ୍ୟା ଭଳି ଏତେ ବିରାଟ ନୁହେଁ । ଜଣେ ଲୋକ ସୁରୁଖୁରୁରେ ତାରାଙ୍କ ସଂଖ୍ୟାକୁ ଗଣି ଦେଇପାରିବ । ସେହି ସଂଖ୍ୟାଟି ପୁଣି ଖୁବ୍ କମ ।

ଆଧୁନିକ ବୈଜ୍ଞାନିକମାନେ ଅତି ସୂକ୍ଷ୍ମ ଯନ୍ତ୍ର ସାହାଯ୍ୟରେ ଆକାଶକୁ କେତେଗୋଟି ନିର୍ଦ୍ଦିଷ୍ଟ ଅଂଶରେ ବିଭକ୍ତ କରି ପ୍ରତି ଅଂଶରେ କେତେ ତାରକା ଅଛନ୍ତି ଗଣି ବାହାର କରିଛନ୍ତି । ତେବେ ଯନ୍ତ୍ର ସାହାଯ୍ୟରେ ଆକାଶକୁ ଭାଗ ଭାଗ କରିବା ସବୁଠାରୁ ବଡ଼ କଥା ।ସେଥି-

ପାଇଁ ଘନ ଅନ୍ଧକାର ରାତିରେ ଆକାଶରେ ମୋଟେ ମେଘ ନଥିବାବେଳେ ଗୋଟିଏ ଉଚ୍ଚ ସ୍ଥାନକୁ ସେହି ଯନ୍ତ୍ରଟିକୁ ନେଇଯିବାକୁ ପଡ଼େ । ସେହି ଯନ୍ତ୍ରଟିକୁ ଆଉ ଏକ ଯନ୍ତ୍ର ଉପରେ ରଖି ତାର ତଳେ ଗଣିଲାବାଲା ବସନ୍ତି । ସାମନାରେ ଚକ୍ରବାଳ ଠାରୁ ଆରମ୍ଭ କରି ତାଙ୍କ ନିଜ ମୁଣ୍ଡ ଉପର ପର୍ଯ୍ୟନ୍ତ ଆକାଶକୁ ଯନ୍ତ୍ରଟି ଘୋଡ଼ାଇ କରି ରଖେ । ଗଣିଲାବାଲାଙ୍କ ମୁଣ୍ଡ ଉପରେଥିବା ଯନ୍ତ୍ରଟିରେ ଆକାଶ କେତୋଟି ନିର୍ଦ୍ଦିଷ୍ଟ ଅଂଶରେ ବିଭକ୍ତ ହୋଇ ଭିନ୍ନ ଦିଶେ । ପ୍ରତ୍ୟେକ ଅଂଶ ଢାଙ୍କୁଣି ଦ୍ୱାରା ବନ୍ଦ ହୋଇଥାଏ । ଗୋଟିଏ ଢାଙ୍କୁଣି ଖୋଲିଲେ ସେହି ଅଂଶରେ ଥିବା ତାରାମାନେ ଦେଖାଯାଆନ୍ତି । ସେମାନଙ୍କୁ ସହଜରେ ଗଣି ହୁଏ । ଏହିଭଳି ଭାବରେ ଗୋଟିଏ ଅଂଶ ପରେ ଆଉ ଗୋଟିଏ ଅଂଶର ତାରାଙ୍କୁ ଗଣି ଆକାଶର ତାରା ସଂଖ୍ୟା ନିର୍ଦ୍ଧାରଣ କରିହୁଏ । ଅବଶ୍ୟ ଏହା ଖୁବ୍ କଷ୍ଟକର କାମ । ଥରେ ଗଣିଲେ ଠିକ୍ ହୁଏ ନାହିଁ । ଯନ୍ତ୍ରକୁ ବିଭିନ୍ନ ଅବସ୍ଥାରେ ରଖି ଆକାଶକୁ ଅନ୍ତତଃ ବାର ଥର ଗଣିବାକୁ ପଡ଼େ । ପ୍ରତ୍ୟେକ ଥରରେ ଯେଉଁ ସଂଖ୍ୟା ମିଳେ, ତାକୁ ଯୋଗ କରି ବାର ଦ୍ୱାରା ହରିଲେ ଯେଉଁ ସଂଖ୍ୟା ବାହାରେ, ତାହା ହେଉଛି ଆକାଶରେ ତାରାଙ୍କ ସଂଖ୍ୟା ।

ଏହି ଉପାୟରେ ଗଣି ବୈଜ୍ଞାନିକମାନେ ଦେଖିଛନ୍ତି—ଅନ୍ଧକାର ରାତିରେ ଆମେ ଯେଉଁ ଅସଂଖ୍ୟ ତାରା ଦେଖୁ, ସେମାନଙ୍କ ସଂଖ୍ୟା ମୋଟେ ତିନି ହଜାରରୁ ଅଧିକ ନୁହେଁ । ଆମେ ଥରକେ ଆକାଶର ମାତ୍ର ଅଧେ ଅଂଶ ଦେଖିପାରୁ, ତେଣୁ ଆମେ ଦେଖୁଁ ଆକାଶରେ ଆଖିକୁ ଦିଶୁଥିବା ତାରାଙ୍କ ସଂଖ୍ୟା ଛଅ ହଜାରରୁ ଅଧିକ ନୁହେଁ ।



# ମରୁ ରାଇଜର ଫୁଲ

ଡକ୍ଟର **କମଳକୁମାରୀ ପଟ୍ଟନାୟକ**

ମିଶର ଦେଶରେ ଫୁଲସଉକ ବାଦଶାହା ଜଣେ ଥିଲେ । ତାଙ୍କର ସୁନ୍ଦର ବଗିଚାଟିଏ ଥାଏ । ସେଇ ବଗିଚାରେ ଥାଏ ଅନେକ ପ୍ରକାର ଗଛ । ଭିନ୍ନ ଭିନ୍ନ ଋତୁରେ ଭିନ୍ନ ଭିନ୍ନ ରଙ୍ଗର ଫୁଲ ଫୁଟେ ସେଥିରେ । ବଡ଼ ପୋଖରୀଟିଏ ଥାଏ ଯେ ସେଥିରେ ପୁଣି ପଦ୍ମ, କଇଁ, ପାଣିଶିଉଳି ଫୁଲ ଭଳି କେତେ ଜାତିର ଲତାଗୁଳ୍ମର ଫୁଲ ଫୁଟୁଥାଏ ।

ଥରେ ବାଦଶାହାଙ୍କର ଖିଆଲ ହେଲା—ମରୁଭୂଇଁରେ ଯେଉଁସବୁ ଫୁଲ ଫୁଟେ, ସେହି ଫୁଲସବୁ କେମିତି ନିଜ ବଗିଚାରେ ଫୁଟାଇବେ । କିନ୍ତୁ ମରୁ ଭୂଇଁରେ କି କି ଫୁଲ ଫୁଟେ ସେ ଜାଣି ନ ଥାନ୍ତି । ସେ ଜାଣିଥାନ୍ତି, 'ନୀଳନଦୀ' ସକାଶେ ତାଙ୍କ ରାଜ୍ୟ ପାଣି ପାଏ, ଫୁଲଫଳରେ, ଗହମ, କପାରେ ଭରିଯାଏ । ତାଙ୍କ ରାଜ୍ୟକୁ ଲାଗିଅଛି ବିଶାଳ ଏକ ମରୁଭୂଇଁ । ସେ ତ ସେଠାକୁ କେବେ ଯାଇ ନଥାନ୍ତି । ଏଣୁ ଜାଣିବାକୁ ଚାହିଁଲେ କେଉଁ କେଉଁ ଫୁଲଗଛ କେମିତି ତାଙ୍କ ବଗିଚାରେ ଲଗାଇବେ ।

ବେଳେ ବେଳେ ସେ ସହର ପରିଭ୍ରମଣରେ ବାହାରନ୍ତି । ଦିନେ ସେ ପ୍ରଧାନମନ୍ତ୍ରୀଙ୍କୁ ସାଙ୍ଗରେ ଧରି ସହର ଭିତରେ ଯାଉଥାନ୍ତି । ଦେଖିଲେ—ଠାଏ ଗୁଡ଼ାଏ କାବୁଲିବାଲା ଓଟପିଠିରୁ ଓହ୍ଲାଇଲେ । ତାଙ୍କୁ ଦେଖି ଆଖ ପାଖରୁ ଲୋକେ ଆସି ଘେରିଗଲେ । କାବୁଲିବାଲାମାନେ ଓଟଗୁଡ଼ିକ ପିଠିରୁ ଖଜୁରି ଭର୍ତ୍ତି ମୁଣା ଓ ଗାଣ୍ଠିଲି ଓହ୍ଲାଇଲେ । ଲୋକଙ୍କୁ ବିକ୍ରି କରିବାକୁ ଲାଗିଲେ ।

ବାଦଶାହା ଭାବିଲେ—କାବୁଲିବାଲାମାନେ ତ ମରୁଭୂଇଁର ଲୋକ, ମରୁଭୂଇଁରେ ଯା' ଆସ କରନ୍ତି । ସେମାନେ ନିଶ୍ଚୟ ମରୁଭୂଇଁରେ ଯେଉଁ ଫୁଲ ଗଛ ଦେଖାଯାଏ କହିପାରିବେ । ଏଣୁ ସେ କାବୁଲିବାଲାମାନଙ୍କୁ ପାଖକୁ ଡାକିଲେ । ବାଦଶାହା ଡାକୁଛନ୍ତି—କାବୁଲିବାଲାମାନେ ଡରିଯାଇ ଥରିବାକୁ ଲାଗିଲେ । କିନ୍ତୁ ତାଙ୍କ ସର୍ଦ୍ଦାର ଆଗ ସାହସ କରି ବାଦଶାହାଙ୍କ ପାଖକୁ ଯାଇ 'କୁର୍ନିଶ୍' (ନଇଁପଡ଼ି ନମସ୍କାର) କଲେ । ବାଦଶାହା ପଚାରିଲେ—

"ମରୁଭୂଇଁରେ କି କି ଫୁଲ ଫୁଟେ—ସେ ଫୁଲଗଛ କେମିତି ମୋ ବଗିଚାରେ ଲଗାଇବି କହ ।"

କାବୁଲିବାଲାମାନେ ନିଃଶ୍ୱାସ ମାରିଲେ—"ଯାହା ହେଉ, ବାଦଶାହା କିଛି ଅଡୁଆ ପ୍ରଶ୍ନ ପଚାରିନାହାନ୍ତି ।"

ସର୍ଦ୍ଦାର ବାଦଶାହାଙ୍କୁ ଜଣାଇଲେ—"ହଜୁର ! ମରୁଭୂଇଁର ଗଛଲତାସବୁ ଆପଣଙ୍କ ଏଠିକା ଗଛଲତା ପରି ପାଣିପବନ ପାଆନ୍ତିନି । ଏଣୁ ସେଠା ଗଛସବୁ ଆପଣଙ୍କ ଏଠା ଗଛଲତାଠାରୁ ପୂରାପୂରି ଅଲଗା । ସେସବୁ ଗଛରେ ପତ୍ର ନଥାଏ । ସେଠାର ନାଗଫେଣୀ ସିଜୁଗଛପରି । ସେ ଗଛର ଗଣ୍ଡିଗୁଡ଼ିକ ମାଂସଳ । ସେ ସବୁ ଗଣ୍ଡିରୁ ଶାଖାପ୍ରଶାଖାମାନ ମେଲାହୋଇଥାଏ । କେବଳ ସେତିକି ନୁହେଁ, ହଜୁର ! ସେସବୁ ଗଛର ଦେହଯାକ ଖାଲି କଣ୍ଟାଭର୍ତ୍ତି । କଣ୍ଟାଗୁଡ଼ିକ କେଉଁ ଗଛରେ ମାଛ କଣ୍ଟା ପରି ଶକ୍ତ, ମୁନିଆଁ ତ, ଆଉ କେଉଁ ଗଛରେ ଆଖିବାଳ ପରି ସରୁ, ପତଳା । ସେ କଣ୍ଟାଗୁଡ଼ିକ ବି ଗୋଠ ବଡ଼, ଏପରି କି ଭିନ୍ନ ଭିନ୍ନ ଗଛରେ ଭିନ୍ନ ଭିନ୍ନ ରଙ୍ଗର । ଆଉ କେତେକ ଗଛର କଣ୍ଟା ବର୍ଚ୍ଛି ପରି ଟାଣ ଓ ମୁନିଆ ।"

"ହଜୁର, ସେସବୁ ଗଛକୁ ଦୂରରୁ ଦେଖିଲେ ମନେ ହୁଏ ଯେମିତି ମରୁଭୂଇଁରେ ଠାଏ ଠାଏ ବାଲିଗଦା ଉପରେ ସୈନ୍ୟମାନେ ଭିନ୍ନ ଭିନ୍ନ ପ୍ରକାର ସାଞ୍ଜୁ ପିନ୍ଧି ଠିଆ ହୋଇଛନ୍ତି—ଯୁଦ୍ଧଭୂଇଁକୁ ଯିବା ପାଇଁ । ସେହି ଗଛସବୁର ମାଂସଳ ଗଣ୍ଡିସବୁ ବି ଅଲଗା ଅଲଗା ରୂପର । ସେଥିଭିତରୁ ଆକାରରେ କେତେଗୁଡ଼ାଏ ଖୁବ୍ ଉଚ୍ଚ ଓ କେତେ-

ଗୁଡ଼ିଏ ଖୁବ୍ ଛୋଟ । କେତୋଟି ଦେଖିବାକୁ ପେଣ୍ଡୁ ପରି, ଅନ୍ୟ କେତେକ ଚଟକା—ଥାଳିଆ ପରି । କେତେ ଶିଙ୍ଗି ଶିଙ୍ଗିକା ବଟଫଳିଆ ହାର ପରି, ପୁଣି କେତେ ଲୂମ ଓ କେତେ ଆକୃତିର । ସାପ ଆକାର ଗଛସବୁର ଆକୃତି ଏତେ ଅଦ୍ଭୁତ ଧରଣର ଯେ ଦେଖିବାକୁ ସତରେ ଭାରି ମଜା ଲାଗେ ।"

ବାଦଶାହା ପଚାରିଲେ—"ସେଇ ଗଛସବୁରେ ପତ୍ର ନ ଥାଏ କାହିଁକି ? ଗଛ ପରା ତା'ର ସବୁଜ ପତ୍ରରେ ଖାଦ୍ୟ ତିଆରି କରେ ।" ବାଦଶାହା ଏ କଥା ତାଙ୍କର କେଉଁ କର୍ମଚାରୀଙ୍କଠୁ ଶୁଣିଥାନ୍ତି ହୁଏତ ! ଏଣୁ ସେ ପୁଣି ପଚାରିଲେ—"ସେଇ ଗଛସବୁ ତ ତା'ହେଲେ ଖାଦ୍ୟ ପ୍ରସ୍ତୁତ କରିପାରୁ ନ ଥିବେ । ସେସବୁ ତେବେ ଖାଦ୍ୟ ପାଆନ୍ତି କେଉଁଠୁ ?" କାବୁଲି ସର୍ଦ୍ଦାର କିଛି ଉତ୍ତର ଦେଇପାରିଲେ ନାହିଁ ।

ବାଦଶାହା ଏଣୁ ଢେଙ୍କୁରା ଦିଅଇ 'ଉଦ୍ଭିଦ ବିଶାରଦ'ମାନଙ୍କୁ ଡକାଇଲେ । ସେମାନଙ୍କ ଭିତରେ ସବୁଠୁ ବଳି ପୋଖତ ମୁଖିଆ ବିଶାରଦ କହିଲେ—'ହଜୁର୍ ! ସେହି ଗଛଗୁଡ଼ିକୁ 'କାକ୍ଟସ୍' କହନ୍ତି । ଉଚ୍ଚା ଡିହ, ଶୁଖିଲାପାଚିଲା ସ୍ଥାନରେ ଆପଣ ନାଗଫେଣୀ ଗଛ ଦେଖିଥିବେ, ହଜୁର ! ସେସବୁ ମଧ୍ୟ ଏହି ଜାତିର ଗଛ । ନାଗଫେଣୀ ବି ଏକ ପ୍ରକାର କାକ୍ଟସ । କାକ୍ଟସ୍ ଗଛସବୁ ପାଣି ନ ଥିବା ଜଗାଠ ଶୁଖିଲା ବାଲି ଜାଗାରେ ବଢ଼େ । ସେଗୁଡ଼ିକର କାଣ୍ଡ ମାଂସଳ । ସେଥିର ପତ୍ର ନ ଥାଏ । ପ୍ରକୃତରେ କହିଲେ—ସେଥିର ପତ୍ରସବୁ ବଦଳି ଯାଇ ବିଭିନ୍ନ ପ୍ରକାରର କଣ୍ଟା ପାଲଟି ଯାଏ ।

"ଯଦି କାକ୍ଟସ୍ ଗଛରେ ପତ୍ର ଥାଆନ୍ତା, ପତ୍ରରେ ଥିବା ଛିଦ୍ରବାଟେ ଗଛରୁ ପାଣି ବାହାରକୁ ବାହାରିଯାଆନ୍ତା । ମରୁ-ଜାଗାରେ ଯଦି ଗଛରୁ ପାଣି ବାହାରିଯିବ; ତେବେ ଗଛ ପାଣି ପାଇବ କେଉଁଠୁ ? ସତରେ ହଜୁର ! ପ୍ରକୃତିର ଏହା ହିଁ ଏକ ବାହାଦୁରି ! ଏହା କାକ୍ଟସ୍ ପତ୍ରଗୁଡ଼ିକର ରୂପାନ୍ତର ଆଣେ । ସେଗୁଡ଼ିକ ରୂପାନ୍ତରିତ ହୋଇ କଣ୍ଟାରେ ପରିଣତ ହୁଏ । ଏଣୁ ସହଜରେ ପଶୁସବୁରୁ ରକ୍ଷା ପାଏ ।"

"ସେଇ ଗଛସବୁର ଖାଦ୍ୟ ତିଆରି ହୁଏ କେମିତି ? କଣ୍ଟା ଗୁଳ୍ମ କ'ଣ ଖାଦ୍ୟ ତିଆରି କରେ ? ଦେଖିବେ ସେହି ଗଛର କାଣ୍ଡର ରଙ୍ଗ ସବୁଜ । ସେହି ସବୁଜ 'ଅଙ୍ଗ'ରେ ହିଁ ଖାଦ୍ୟ ପ୍ରସ୍ତୁତ ହୁଏ । ଆଉ ସେହି ଖାଦ୍ୟ କାଣ୍ଡରେ ସାଇତି ହୋଇ ରହେ । ଦରକାରବେଳେ ସେହି ଖାଦ୍ୟକୁ ବ୍ୟବହାର କରି ଗଛଟି ପୁଷ୍ଟ ହୁଏ । ମାଂସଳ ଗଣ୍ଡିଟି ଉପରେ ଏକ ପ୍ରକାର ଲେପ ବା ଆବରଣ ଥାଏ । ଏଣୁ କାଣ୍ଡରୁ ସହଜରେ ଜଳୀୟ ଅଂଶ ପଦାକୁ ବାହାରିଯାଏ ନାହିଁ ।"

ଓଟବାହକ ସର୍ଦ୍ଦାର ଦୀର୍ଘ ନିଃଶ୍ୱାସଟିଏ ପକାଇ କହି ବସିଲେ— ତାଙ୍କ ଅଙ୍ଗେ ଲିଭେଇଥିବା ଗୋଟିଏ ଛୋଟିଆ ଘଟଣା । "ହଁ—ହଜୁର, ସେହି ଦିନ ତ ଆମେ ମରୁଭୂମିର ବାଲୁକାମୟ ରାସ୍ତାରେ ଓଟ ଉପରେ କଟାଉ । ଦିନେ ଉଦୁଉଦୁଆ ଦ୍ୱିପ୍ରହର ବେଳ । ହଠାତ୍ ଦେଖିଲି, ମୋ ଓଟଟା ଅଣନିଃଶ୍ୱାସୀ ହୋଇ ଚଳୁଛି । ମନେ ହେଲା, ତାକୁ ଖୁବ ଶୋଷ ହେଉଛି । ନିକଟରେ କେଉଁଠି 'ମରୁ ଉଦ୍ୟାନ' ନ ଥାଏ । ସାଙ୍ଗରେ ବହି ନେଇଥିବା ପାଣି ସରି ଯାଇଥାଏ । ବୁଝିବାଟ ଦିଶିଲା ନାହିଁ । କ'ଣ କରିବ ମୋ ଓଟଟି ତ ମରିଯିବ ଶୋଷରେ । ମୁଁ ବି ତତଲା ବାଲିରେ ପଡ଼ି ଛଟପଟ ହୋଇ ମରିବି । ଦେଖିଲି, କିଛିକ୍ଷଣ ପରେ ଓଟଟି ବିକଳ ବେଗରେ ଗୋଟିଏ କଣ୍ଟାଳିଆ ବୁଦା ଆଡ଼କୁ ଧାଇଁଲା । ମୁଁ ବସିଥାଏ ତା ପିଠି ଉପରେ । ଦେଖୁ ଦେଖୁ ଏମିତି ଏକ କୁଦା ମାରିଲା ସେ କଣ୍ଟାଗଛ ଉପରକୁ—ମୋ ଆଖି ବୁଜି ହୋଇଗଲା । ତଳେ ଖସିଟି ପଡ଼ିଥାନ୍ତି, ତା କାନ୍ଧକୁ ଧରି ସମ୍ଭାଳିଗଲି । ସେ ଚେପେଇ ପଡ଼ି କଣ୍ଟାଗଛ ବିଦାରି ପକାଇଲା । ଆଉ କଣ୍ଟା ଗଛର ଗଣ୍ଡିରୁ ପାଣି ନିଗିଡ଼ି ଆସିଲା । ଓଟଟି ସେଇ ପାଣିକୁ ଚେପେଟ ପିଇବାରେ ଲାଗିଲା । ବଞ୍ଚିଗଲା ଆମ୍ଭ ସେଦିନ ! ମୁଁ ବି ସେ ପାଣିରେ ଓଠ ଓଦା କରିନେଲି । ହେଲେ, କଣ୍ଟାବୁଦାରେ ମୋ ଦେହ ଚିରି ହୋଇଯାଇ ରକ୍ତ ବୋହୁଥାଏ । ଗଛଟି ଭିତରେ ପାଣି ଏତେ ଭରପୂର ହୋଇଥିଲା ବୋଲି ସିନା ଆମେ ବଞ୍ଚିଗଲୁ । ପ୍ରକୃତରେ ମରୁ ରାଇଜର ଗଛ ପଥିକମାନଙ୍କ ପାଇଁ ଏକ ପ୍ରକାର ଆଶୀର୍ବାଦ, ହଜୁର ।"

ବାଦଶାହା ଆଶ୍ଚର୍ଯ୍ୟ ହୋଇ 'ବିଶାରଦ'ଙ୍କୁ ପଚାରିଲେ । "ମରୁଭୂମିରେ ତ ପାଣି ନାହିଁ । ଏତେ ପାଣି ସେ ଗଛରେ ଆସିଲା କେଉଁଠୁ ।"

ବିଶାରଦ କହିଲେ—

"ପ୍ରକୃତିର ଲୀଳା ଆଜ୍ଞା! ମରୁଜ ଉଦ୍ଭିଦର ଚେର ଲମ୍ବା। ମରୁଭୂମିରେ ପାଣି ଅଭାବ ହେତୁରୁ ସେମାନଙ୍କ ଚେରଗୁଡ଼ିକ ଲମ୍ବା ହୋଇ ମାଟିତଳେ ଏଣେ ତେଣେ ମାଡ଼ିଯାଏ, ମାଡ଼ିଯାଇ ପାଣିର ଖବର ଖୋଜ ହୁଏ। ଯେଉଁଠି ପାଣିର ସନ୍ଧାନ ପାଏ, ସେଇଠି ଅଟକିଯାଇ ପାଣି ଶୋଷେ ଓ ସେହି ପାଣିକୁ ଗଛର କାଣ୍ଡକୁ ପଠାଇଦିଏ। ତେବେ କାଣ୍ଡରେ କେବଳ ଯେ ଖାଦ୍ୟ ସଂଚୟ ହୋଇ ରହେ, ତା' ନୁହେଁ, ପାଣି ବି ସାଇତା ହୋଇ ରହେ। ଏଇଥିପାଇଁ 'କାକ୍‌ଟସ୍‌'ର କାଣ୍ଡ ମାଂସଳ ହୁଏ।"

ବାଦଶାହାଙ୍କର ତ ଫୁଲରେ ମନ। ସେ ପଚାରିଲେ— "ଆଚ୍ଛା, ଏ କାକ୍‌ଟସ୍‌ ଗଛଗୁଡ଼ିକରେ ଫୁଲ ଫୁଟେ କି ନାହିଁ?"

କାବୁଲି ସର୍ଦ୍ଦାର କହିଲେ—"ହଜୁର, ଫୁଟେ—ବିଭିନ୍ନ ରଙ୍ଗର ଫୁଲ ବି ଫୁଟେ। ଗଛଗୁଡ଼ିକ ତ ମାଂସଳ, ସେଥିରେ ପୁଣି ବିଭିନ୍ନ ପ୍ରକାର ଭଙ୍ଗୀରେ ଦେହଗୁଡ଼ିକ ବଢ଼ିଥାଏ। ତେଣୁ ସେଗୁଡ଼ିକ ଭିତରୁ କେତେକର ଚେହେରା ଦେଉଳ ପରି ତ ଆଉ କେତେକ ମୁକୁଟ ପରି ହୁଏ; ଆଉ କେତେ ସାପ ପରି ଦିଶେ। ଏପରି ବିଭିନ୍ନ ଆକୃତିର ଗଣ୍ଡି ଉପରେ ଯେତେବେଳେ ନାଲି, ନେଳି, ଧଳା, ବାଇଗଣୀ, ହଳଦିଆ, ଗୋଲାପୀ ରଙ୍ଗର ଫୁଲ ଫୁଟେ, ଭାରି ସୁନ୍ଦର ଦିଶେ; କିନ୍ତୁ ସେ ଫୁଲଗୁଡ଼ିକ ସବୁ ସମୟରେ ଫୁଟେ ନାହିଁ। କେତେକ ପ୍ରକାର କାକ୍‌ଟସ୍ ଗଛରେ ଫୁଲଟିଏ ଫୁଟିବାପାଇଁ ବର୍ଷେ ସମୟ ଲାଗିଯାଏ। ସେ ଫୁଲ ଫୁଟିବାର ଆଉ ଏକ ବିଶେଷ ଢଙ୍ଗ ହେଲା—ତାହା ପୁଣି ରାତିରେ ଫୁଟେ, ସକାଳକୁ ଝାଉଁଳିଯାଏ। କେତେକ କାକ୍‌ଟସ୍ ଫୁଲରେ ବାସନା ଦିଲଖୁସିଆ। ହଜୁର୍! କାକ୍‌ଟସ୍ ଫୁଲଗୁଡ଼ିକ ତ ସୁନ୍ଦର। ସେଗୁଡ଼ିକ ଆଣି ଆମ ବାଡ଼ିବଗିଚାରେ ଲଗାଇଲେ ବେଶ୍ ଭଲ ଦିଶିବ। ତେବେ ତାହାର ମଞ୍ଜି ଅଛି କି ନାହିଁ, କେମିତି ଗଛ ଲଗାଯାଏ—ଏ ବିଷୟରେ ମୋର କିଛି ଧାରଣା ନାହିଁ। ଉଦ୍ଭିଦ ବିଶାରଦ ମହାଶୟ ଜାଣିଥିବେ।"

ଉଦ୍ଭିଦ ବିଶାରଦ ମୁଣ୍ଡ ଟୁଙ୍ଗାଇ କହିଲେ—"ହଁ, ଠିକ୍ କଥା। ସେଗୁଡ଼ିକୁ ବାଡ଼ିବଗିଚାରେ ଲଗାଯାଇପାରିବ। —କାକ୍‌ଟସ୍‌ରେ ମଞ୍ଜି

ହୁଏ । ଯେଉଁ ମଞ୍ଜି ଆଣି ବୁଣିଲେ କାକ୍‌ଟସ୍ ଗଛ ହୁଏ । ତେବେ ମଞ୍ଜି ଅପେକ୍ଷା କାଣ୍ଡରୁ ଖଣ୍ଡେ ଭାଙ୍ଗି ଆଣି ଲଗାଇ ଦେଲେ ଚଳିବ । ସେଥିରେ ଖୁବ୍ ଶୀଘ୍ର ଚେର ଧରିବ । ସେ ଗଛ ବି ଖୁବ୍ ଶୀଘ୍ର ବଢିବ । ତେବେ ଗୋଟିଏ କଥା—କାକ୍‌ଟସ୍ ଯେହେତୁ ଗୋଟିଏ 'ମରୁଜ ଉଦ୍ଭିଦ' ହୋଇ ହେଉଛି ସେ ଗଛସବୁ ଲଗାଇବା ପାଇଁ ଅଲଗା ଧରଣର ବାଡ଼ବଗିଚା ଦରକାର ।"

ବାଦଶାହା କହିଲେ—"ସାବାସ୍ ! କଥାଟି ମୋ ମନକୁ ବେଶ୍ ପାଇଲା । ଏଥର ଆମ ବଶାରଦ ମୋ ବଗିଚାରେ ମରୁଜ ଉଦ୍ଭିଦର ମଞ୍ଜି ବୁଣିବେ । ଆଜି ମୁଁ ଦେଖିବ ଭିନ୍ନ ପ୍ରକାର କାକ୍‌ଟସ୍ ମୋ ବଗିଚାକୁ କେମିତି ଅଦ୍ଭୁତ ସୁନ୍ଦର କରୁଛି ।" ବାଦଶାହା କାବୁଲ-ବାଲାଙ୍କୁ ଧନ, ରତ୍ନ ଦେଇ ବିଦାୟ କଲେ ।

ତା'ପରେ ବାଦଶାହାଙ୍କ ବଗିଚାରେ ଗୋଟିଏ ଉଚ୍ଚ ଟାଙ୍ଗରା ଭୂଇଁରେ ବାଲି ଗୋଡ଼ ବଛେଇ ଦିଆଗଲା । କୃତ୍ରିମ ମରୁ ତିଆରି ହେଲା । ଭିନ୍ନ ସ୍ଥାନରୁ ଭିନ୍ନ ଭିନ୍ନ ପ୍ରକାରର କାକ୍‌ଟସ୍ ଗଛ ଅଣା-ହୋଇ ଲଗାଗଲା । ପୁଣି କାକ୍‌ଟସ୍ ମଞ୍ଜି ଅଣାଯାଇ ପୋତା ହେଲା । କ୍ରମେ କାକ୍‌ଟସ ଗଛସବୁ ବଢିବାକୁ ଲାଗିଲା । ଦେଖୁ ଦେଖୁ ସେଥିରେ କଢ ଧରିଲା । କଢ଼ ହେବା ଦେଖି ବାଦଶାହାଙ୍କ ମନ ଖୁସିରେ ପୁରିଉଠିଲା ।

ସେ ଭାବିଁ ରହିଥାନ୍ତି ତାଙ୍କ ବଗିଚାରେ 'ମରୁସାଇଜର ଫୁଲ' କେଉଁ ରାତିରେ ଫୁଟିବ । ସେ ଅପେକ୍ଷା କରି ବସିଥାନ୍ତି—ରାତି ଉଜାଗର ହୋଇ । କ୍ରମେ କଢିଟିଏ ଦେଖାଦେଲା—କଢ଼ିର ପାଖୁଡ଼ା କେତୋଟି ଖୋଲାହୋଇ ଆସିଲା । ଜହ୍ନ ଆଲୋକରେ ଆଦ୍ଭୁତ ସତେଜ ଓ ସୁନ୍ଦର ଦେଖାଗଲା ଫୁଟନ୍ତା ଫୁଲଟିଏ । ଫୁଲ ଦେଖି ବାଦଶାହା ଆନନ୍ଦରେ ବିଭୋର ହୋଇ ପାଟିକରି ଉଠିଲେ—"ସାବାସ୍—ସାବାସ୍ ମୋ 'କାକ୍‌ଟସ୍'ର କୁଡ୍ମଳ ।'



# ବଡ଼ରୋଗ

ପ୍ରଫେସର **ଡକ୍ଟର କେଶବଚନ୍ଦ୍ର ସାହୁ**

ଅନେକ ଦିନ ତଳର କଥା । କିଏ ସତ ବୁଝନ୍ତୁ କି ମିଛ ବୁଝନ୍ତୁ । ପିତୃ ଅଭିଶାପ ଫଳରେ ପୁତ୍ର ଦିନେ ବଡ଼ ରୋଗ ଭୋଗିଥିଲେ । ପିତା ହେଉଛନ୍ତି ଶ୍ରୀକୃଷ୍ଣ । ପୁତ୍ର ହେଉଛନ୍ତି ଶାମ୍ବ ।

ଶାମ୍ବ ବଡ଼ରୋଗ ଦ୍ୱାରା ଆକ୍ରାନ୍ତ ହେବାପରେ ସ୍ୱଦମ୍ଭ ଓ ଧୈର୍ଯ୍ୟ ହରାଇ ବସିଲେ । ମନର ବଳ କମିଗଲା । ଦେହର ଶକ୍ତି କମିଗଲା । ଲୋଭନୀୟ ରୂପର ସୌନ୍ଦର୍ଯ୍ୟ ଉଭେଇ ଗଲା । ଅବୟବରେ ଜୀବାଣୁର ଆକ୍ରମଣ ପ୍ରବଳ ହୋଇ ଉଠିଲା ।

ଦେହସାରା ଧଳା ଧଳା ଛିଟ ଦେଖାଗଲା । ସେ ନିଜକୁ ମନେକଲେ ଘୃଣିତ । ସମାଜ ବି ତାଙ୍କୁ ଘୃଣା ଚକ୍ଷୁରେ ଦେଖିଲା । ସ୍ନାୟୁରେ ବିନ୍ଧା ଝିଟିକା ପ୍ରବଳ ହେଲା । ପିତାଙ୍କୁ କ୍ଷମା ମାଗିଲେ ଶାମ୍ବ । ଭଗବାନ ଶ୍ରୀକୃଷ୍ଣଙ୍କ ହୃଦ ତରଳି ଗଲା । ସେ ଗରୁଡ଼କୁ ଆଦେଶ ଦେବାରୁ ଗରୁଡ଼ ତାଙ୍କୁ ଆମ ଦେଶର ଅର୍କ କ୍ଷେତ୍ରକୁ ନେଇ ଆସିଲା । ଏ ଦେଶର କଅଁଳ-ଖରା ତାଙ୍କ ଘାକୁ ଶୁଖାଇଲା । ଖାଦ୍ୟସାର ରୋଗ ଉପଶମ କଲା । ଶାମ୍ବ ଆରୋଗ୍ୟଲାଭ କଲାପରେ ଆନନ୍ଦ ମନରେ ଫେରିଗଲେ ଦ୍ୱାରକାକୁ । ତାଙ୍କର ବିଦାୟ ଦିନକୁ ଏ ଦେଶର ମା'ମାନେ ଏବେବି ଖୁସିରେ ପାଳନ୍ତି । ସୂର୍ଯ୍ୟ ଦେବଙ୍କୁ ପିଠାପଣା ଭୋଗ ଦେଇ ସାଇ ପଡ଼ିଶାରୁ ପିଲାଙ୍କୁ ଡାକି ଖୁଆନ୍ତି ।

ଏ ପର୍ବର ନାମ, ଶାମ୍ବଙ୍କ ନାମ ଅନୁସାରେ ଶାମ୍ବ ଦଶମୀ । ମହାତ୍ମା ଗାନ୍ଧୀ ଏହି ବଡ଼ରୋଗର ନିରାକରଣ ପାଇଁ ସର୍ବଦା ଚିନ୍ତିତ ଥିଲେ । ଏହି ରୋଗକୁ ଭଲ କରିବାରେ ଅପରେସନ ମଧ୍ୟ ବେଳେବେଳେ ଦରକାର ପଡ଼େ ।



# ଚଢ଼େଇର ମଞ୍ଜି

## ଶ୍ରୀ ରାମକୃଷ୍ଣ ନନ୍ଦ

ପ୍ରାର୍ଥନା ବୋଲା ସାରି ବୁଲ୍, ରବି ଓ ସବିତା ଜେଜେଙ୍କ ପାଖରେ ବସି ପଡ଼ିଲେ । ଗପ ଶୁଣିବାକୁ ସମସ୍ତେ ଉଚ୍ଛନ୍ନ । ଜେଜେ କହିଲେ, 'କେତେ ତ ଗପ ଶୁଣୁଛ ! ଆଜି ଆଉ କିଛି ଶୁଣ ।'

'ନା, ନା, ଏକ ସ୍ୱରରେ ତିନିଜଣଯାକ ପାଟିକରି ଉଠିଲେ । ଆଗ ଗୋଟିଏ ଗପ କହ, ତାପରେ ଆଉ ଯାହା କହିବ ।'

'ହଉ ଶୁଣ ତେବେ, ଗପଟିଏ କହୁଛି ।' ଜେଜେ ଗପ ଆରମ୍ଭ କଲେ ।

ଗୋଟିଏ ପିଲା ଥିଲା, ତାର ନାମ ବବି । ବବି ଘରଠାରୁ ତା' ମାମୁଁ ଘର ଅଳ୍ପବାଟ । ତେଣୁ ଇଚ୍ଛା ହେଲେ ସେ ଏକୁଟିଆ ଦିନେ ଦିନେ ମାମୁଁ ଘରକୁ ବୁଲିଯାଏ । ସେଦିନ ହୋଇଥାଏ ପ୍ରଥମାଷ୍ଟମୀ । ମା ପିଠାପଣା କରିଥିଲେ । ମାମୁଁ ନୂଆ ଜାମା ଓ ପ୍ୟାଣ୍ଟ ପଠାଇ ଦେଇ-ଥିଲେ । ସଅଳ ଦି'ଟା ଖାଇଦେଇ ଜାମା ପ୍ୟାଣ୍ଟ ପିନ୍ଧି ବବି ତାର ମାଆଙ୍କୁ କହିଲା, "ମାଆ, ମୁଁ ଯାଉଛି ଟିକିଏ ମାମୁଁଘରୁ ବୁଲି ଆସିବି ।"

ପ୍ରାୟ ଅଧଘଣ୍ଟାଏ ଭିତରେ ସେ ମାମୁଁଘରେ ପହଞ୍ଚିଗଲା । ଦାଣ୍ଡପଟ ବଗିଚାରେ ମାମୁଁ ବୁଲୁ ଥିଲେ । ବବିକୁ ଦେଖି ହସି ହସି କହିଲେ, 'ମୁଁ ଜାଣେ ତୁ ଆଜି ଆସିବୁ । ତତେ ଦେବାପାଇଁ ଗୋଟାଏ ଆଶ୍ଚର୍ଯ୍ୟ ଜିନିଷ ରଖିଛି ।' 'କି ଆଶ୍ଚର୍ଯ୍ୟ ଜିନିଷ ? କାହିଁ ଦେଖେ ।' ବବି ଆଗ୍ରହରେ ଚାହିଁଲା ମାମୁଁଙ୍କ ଆଡ଼କୁ । ସବୁଠରୁ ମାମୁଁ ତାକୁ କହିଲେ

ନା କିଛି ଗୋଟାଏ ନୂଆ ଜିନିଷ ଦିଅନ୍ତି । ଆଜି ବି ଦେଇଥାଇନ୍ତି, କିନ୍ତୁ ତାଙ୍କ ପାଖରେ କିଛି ଜିନିଷ ଥିବାଭଳି ତ ଦେଖା ଯାଉନାହିଁ । ମାମୁଙ୍କ ପକେଟ ଦୁଇଟା ଅଣ୍ଡାଳି ପକାଇ ବବି କହିଲା, "ତୁମ ପକେଟ ତ ଖାଲି ପଡ଼ିଛି । ଜିନିଷ ଆଜି କେଉଁଠି ରଖିଛ ?"

'ମୋ ଗୁପ୍ତ ପକେଟରେ ଅଛି', ମାମୁଁ କହିଲେ । 'ସେଇ ଗୁପ୍ତ ପକେଟରେ ? ଦେଖେ କ'ଣ ରଖିଛ'—ବବି ଅଧୈର୍ଯ୍ୟମିଶା ସ୍ୱରରେ ପଚାରିଲା ।

ମାମୁଁ ପକେଟରୁ ସ୍ଥିର ଚଉଡ଼ା ହୋଇ ଭଙ୍ଗା ହୋଇଥିବା କାଗଜଖଣ୍ଡେ ବାହାର କରି ବବି ହାତକୁ ବଢ଼ାଇ ଦେଲେ ।

ବବି ମୁହଁ ଶୁଖାଇ ଦେଇ ପଚାରିଲା, 'ଏଇଟା କି ଆଶ୍ଚର୍ଯ୍ୟ ଜିନିଷ ? ତୁମେ ମତେ ଆଜି ଅପ୍ରେଇଲ ଫୁଲ୍ କରିଦେଲ, ନା ?'

ମାମୁଁ କହିଲେ, 'ତାକୁ ଫିଟେଇ ଦେଖ୍ କ'ଣ ଅଛି ତା' ଭିତରେ ।" ଚଉଡ଼ା ଭଙ୍ଗା କାଗଜଟିକୁ ଖୋଲି ବବି ଦେଖିଲା, ତା ଭିତରେ ଗୋଟିଏ ମଞ୍ଜି । ଆଶ୍ଚର୍ଯ୍ୟ ହୋଇ ପଚାରିଲା, 'ଏଇଟା କଅଣ ? ବୋଧ ହୁଏ ଭେଣ୍ଡି ମଞ୍ଜିଟାଏ ?'

"ନା "

"କଅଣ ତେବେ ?"

"ଚଢ଼େଇ ମଞ୍ଜି ।"

"ତୁମେ ଖାଲି ମତେ ଚିଡ଼ାଉଛ, ମାମୁଁ । ଗଛର ସିନା ମଞ୍ଜି ଥାଏ, ଚଢ଼େଇର କି ମଞ୍ଜି ? ଅବଶ୍ୟ ମାଛ ଅଣ୍ଡାକୁ ମାଛମଞ୍ଜି କହନ୍ତି ମୁଁ ଜାଣେ । କିନ୍ତୁ ଚଢ଼େଇମଞ୍ଜି କଥା ମୁଁ ତ କେବେ ଶୁଣିନାହିଁ । ଏ କ'ଣ ଚଢ଼େଇ ଅଣ୍ଡା ?"

"ମୁଁ ତ ତା' କହୁନାହିଁ । ତୁ ପରେ ଜାଣିବୁ ସେ କ'ଣ । ବର୍ତ୍ତମାନ ତାକୁ ନେଇଯା । ମାଆଙ୍କୁ କହି ବଗିଚାରେ ଗୋଟିଏ ଖୋଲା ଜାଗାରେ ପୋତି ଦବୁ । ନିତି ଟିକିଏ ଟିକିଏ ପାଣି ଦେଉଥିବୁ ।"

ମଞ୍ଜିଟିକୁ ଯତ୍ନରେ ପକେଟରେ ପୂରାଇ ବବି ଧାଇଁଲା ଘରକୁ । ମାଆଙ୍କୁ ମଞ୍ଜିଟି ଦେଖାଇ କହିଲା, 'ମାଆ, ମାମୁଁ କହିଲେ ଏଇଟ । ଚଢ଼େଇମଞ୍ଜି । ନେ, ବଗିଚାରେ ପୋତିଦେବୁ । ତୁ ଜାଣିଛୁ ଏ କି

ମଞ୍ଜି ?" ବବର ମା ହସି ହସି କହିଲେ, ମୁଁ ଜାଣି ନାହିଁ । ଗୁଲ୍ ପୋତିଦେବା, ଗଛ ହେଲେ ବଳେ ଜଣାପଡ଼ିବ । ମାମୁଁ କ'ଣ ମିଛ କହିଥିବେ ?

ମା' ପୁଅ ଦୁହେଁ ଗୋଟିଏ ଖୋଲାଜାଗା ଦେଖି ମାଟିଖୋଳି ମଞ୍ଜିଟିକୁ ପୋତିଲେ । ବବ ସେଥିରେ ପାଣି ଟିକିଏ ଦେଇସାରି ଘରକୁ ଆସିଲା ।

ପ୍ରତିଦିନ ସେ ଯାଇ ଦେଖେ ସେ ଜାଗାଟିକୁ । ପଞ୍ଚମଦିନ ଦେଖିଲାବେଳକୁ ଯୋଡ଼ିଏ କୁନି କଅଁଳ ପତ୍ର ଢେଠୋରୁ ବାହାରିଛି । ଆନନ୍ଦରେ ବବ ଧାଇଁ ଯାଇ ମାଆଙ୍କୁ ଡାକି ଦେଖାଇଲା ଏବଂ ମାମୁଁଙ୍କୁ ମଧ୍ୟ ଜଣାଇଲା । ମାମୁଁ କହିଲେ, "ଭଲ କଥା । ପ୍ରତିଦିନ ପାଣି ଦେଉଥିବୁ, ଆଉ ଗଛମୂଳରୁ ଘାସ ଉପାଡ଼ି ଦେଉଥିବୁ ।"

ବବ ପଚାରିଲା, "ତା ନିଶ୍ଚୟ କରିବି, କିନ୍ତୁ ସେ କି ଗଛ ମତେ କହିଲ ନାହିଁ ଯେ ?"

ମାମୁଁ ହସି ହସି କହିଲେ, "କହିବି ପରେ ଆଗରୁ ।"

ବବ କହିଲା, "ସେଥିରେ କ'ଣ ଚଢ଼େଇ ଫଳିବେ ?"

"ତୁ ଅପେକ୍ଷା କର, ଦେଖିବୁ ।"

ମାମୁଁଙ୍କ କଥା ମାନି ବବ ଫେରିଲା ଘରକୁ । ଗଛଟିକୁ ଯତ୍ନରେ ପାଣିଦେଇ ବଢ଼ାଉଥାଏ । ବଢ଼ି ବଢ଼ି ଗଛଟି ଯେତେବେଳେ ବବର ଦୁଇଗୁଣ ଉଚ୍ଚ ହେଲା, ଦିନେ ସେ ଦେଖିଲା ଗୋଟିଏ ଗୋଲ କଢ଼ ତା' ଅଗରେ । କଢ଼ଟି ବଡ଼ ହୋଇ ତା ହାତର ମୁଠାପରି ହେଲା । ତା' ପରେ ଦିନେ ଦେଖାଗଲା ତା ଚାରିପାଖରେ ସୁନ୍ଦର ହଳଦିଆ ପାଖୁଡ଼ା-ଗୁଡ଼ିଏ ବାହାରିଛି । ମଝିରେ ବାଦାମୀ ରଙ୍ଗର ଚକ୍ତିଟିଏ ।

ବବର ଆନନ୍ଦ ଦେଖେ କିଏ ! ସେ ଧାଇଁ ଯାଇ ତା ସାଙ୍ଗମାନଙ୍କୁ ଡାକି ଆଣିଲା । କିନ୍ତୁ କେହି କହିପାରିଲେ ନାହିଁ ସେଇଟା କି ଫୁଲ । ବବର ମାଆ କହିଲେ, "ଏ ଫୁଲ ନାଁ ସୂର୍ଯ୍ୟମୁଖୀ, କାରଣ ସବୁବେଳେ ସେ ସୂର୍ଯ୍ୟଙ୍କ ଆଡ଼କୁ ମୁହଁ କରିଥାଏ ।"

ବବି କହିଲା, "ମାମୁଁ ତେବେ ଏହାକୁ ଚଢ଼େଇମଞ୍ଜି କହୁଥିଲେ କାହିଁକି ?" ମାଆ କହିଲେ, "ମୁଁ ଜାଣେନା । ଅପେକ୍ଷା କରି ଦେଖିବା । ତା' ନ ହେଲେ ତୁ ମାମୁଁଙ୍କୁ ଯାଇ ପଚାରିବୁ ।"

ମାମୁଁଙ୍କୁ ପଚାରିବା ଆବଶ୍ୟକ ପଡ଼ିଲା ନାହିଁ । କିଛିଦିନ ପରେ ବବି ଏକ ଅଦ୍ଭୁତ ଦୃଶ୍ୟ ଦେଖିଲା । ସେତେବେଳକୁ ଫୁଲଟି ଥାଳିଆ ପରି ବଡ଼ ହୋଇ ଯାଇଥାଏ । ଦୁଇଟି ଶୁଆ ସେ ଗଛ ଅଗରେ ବସି ଫୁଲମଝିରୁ ତାଙ୍କ ନାଲିଆଥଣ୍ଟରେ କ'ଣ ଖୋଳି ଖୋଳି ଖାଉଥାନ୍ତି । ବବି ଆନନ୍ଦରେ ଡାକ ଛାଡ଼ିଲା, "ମା,ମା, ଦେଖିବ ଆସ, କି ସୁନ୍ଦର ଶାଗୁଆ ଚଢ଼େଇ ଯୋଡ଼ାଏ ମୋ ଫୁଲରେ ବସିଛନ୍ତି । ବର୍ତ୍ତମାନ ବୁଝିଲି ମାମୁଁ କାହିଁକି ଏହାର ମଞ୍ଜିକୁ ଚଢେଇମଞ୍ଜି ବୋଲି କହୁଥିଲେ ।"

ଗପଟି କହିସାରି ଜେଜେ କହିଲେ, "ମୋ କଥାଟି ସରିଲା, ଫୁଲଗଛଟି‥ ‥", ପିଲାମାନେ ଯୋଡ଼ିଦେଲେ 'ମଉଳା' ! ଜେଜେ କହିଲେ, ନା, ଗଛ ମଲା ନାହିଁ, ଆହୁରି କିଛିଦିନ ବଞ୍ଚିଲା । କିନ୍ତୁ ଜାଣିଛ କି ପିଲେ, ଶୁଆ ଦିଓଟି ସେ ଫୁଲରୁ କଣ ଖାଉଥିଲେ ?"

ସବିତା ଆଗ କହି ଉଠିଲା, "ମହୁ ।" ଜେଜେ କହିଲେ, "ଦୁର୍ ବୋକୀ । ଶୁଆ କ'ଣ ମହୁମାଛି ହୋଇଛନ୍ତି କି ମହୁ ଖାଇବେ ? ସେମାନେ ଖାଉଥିଲେ ଫୁଲର ମଞ୍ଜିକୁ । ଏବେ ଜଣାପଡ଼ୁଛି ଯେ ସୂର୍ଯ୍ୟମୁଖୀ ମଞ୍ଜିରେ ବହୁତ ସାର ଏବଂ ତେଲ ଅଛି । ସେଥିପାଇଁ ଅନେକ ଦେଶରେ ତାର ଚାଷ କରାଯାଉଛି । କିନ୍ତୁ ସୃଷ୍ଟି ଆରମ୍ଭରୁ ବଣର ପକ୍ଷୀମାନେ ସେକଥା ଜାଣିଥିଲେ । ତାଙ୍କଠାରୁ ଦେଖି ଆଦିବାସୀମାନେ ପ୍ରଥମେ ସୂର୍ଯ୍ୟମୁଖୀର ଗୁଣ ଚିହ୍ନିଲେ । ସେମାନେ ତାର ମଞ୍ଜିକୁ କୁକୁଡ଼ାକୁ ଖୁଆଉଥିଲେ ଏବଂ ପତ୍ରକୁ ଗୋରୁଙ୍କୁ ଖାଇବାକୁ ଦେଉଥିଲେ । ସୂର୍ଯ୍ୟମୁଖୀର ଢେଙ୍କରୁ ସୂତୁଳି ଏବଂ ପାଖୁଡ଼ାରୁ ରଙ୍ଗ ତିଆରି କରୁଥିଲେ । ଚଢେଇଙ୍କୁ ଦେଖି ମନୁଷ୍ୟ ଏହିପରି ଅନେକ କଥା ଶିଖିଛି । ଆଉ କ'ଣ ଶିଖିଛି, କାଲିକି ଭାବିକରି ଆସିଥିବ । ଆଜି ଯାଅ ।"



# ମୁଁ ରାମର ପାକସ୍ଥଳୀ

## ଡାକ୍ତର ଗୁରୁ ପ୍ରସାଦ ମହାନ୍ତି

ମୁଁ ରାମପାଇଁ ଏବକୁ ୩୫ ବର୍ଷ ହେବ କାମ କରି ଆସୁଛି । ରାମ ଯାହା ଯାହା ଖାଏ ମୋ ଦେହରେ ମୁଁ ସେସବୁକୁ ଧରି ରଖେ । କିଛି କିଛି ହଜମ କରେ । ତା'ପରେ ଧୀରେ ଧୀରେ ସେସବୁ ଖାଦ୍ୟକୁ ମୁଁ ଅନ୍ତନଳୀକୁ ଠେଲି ପକାଏ । କାରଣ ଅନ୍ତନଳୀ ହେଉଛି ହଜମ କରିବାର ପ୍ରଧାନ ଜାଗା । ଖାଦ୍ୟସବୁ ଅନ୍ତନଳୀରେ ହିଁ ହଜମ ହୋଇ ଶିରାପ୍ରଶିରାରେ ଦେହ ଭିତରକୁ ଯାଏ । ମୁଁ ଗୋଟାଏ ଖାଦ୍ୟ ଭଣ୍ଡାର ଭଳି କାମ କରେ ।

ଦେଖିବାକୁ ମୁଁ ପବନ ନଥିବା ଫୁଟ୍‌ବଲ୍ ବ୍ଲାଡ଼ର ଭଳି । ଆକାରରେ ଇଂରାଜୀ 'J' ଭଳି ଦିଶେ । ମୋର ବାହାର ପାଖ ଚକଚକିଆ ଗୋଲାପି ରଙ୍ଗ ଓ ଭିତରଟା କୁଞ୍ଚକୁଞ୍ଚିଆ ମଖମଲ ଭଳି । ମୁଁ ରାମର ବାଁ ପାଖ ଉପର ପେଟରେ ପିଞ୍ଜରାହାଡ଼ ତଳକୁ ରହେ । ମୋର ଉପର ପାଖରେ ପାଟିରୁ ଆସିଥିବା ଖାଦ୍ୟନଳୀ ଲାଗିଛି, ତଳପାଖରୁ ଛୋଟ ଅନ୍ତନଳୀ ବାହାରି ଯାଇଛି । ଥରକୁ ମୁଁ କେଜିଏ ଖାଦ୍ୟ ଧରି ରଖିପାରେ । ମୁଁ ବେଶୀ ସମୟ ଖାଲି ରହିଲେ ରାମକୁ ଭୋକ କରେ । ତେଣୁ ରାମ ଦିନ ଭିତରେ ଅନ୍ତତଃ ପକ୍ଷେ ୩/୪ ଥର ଖାଏ ।

ମୋ ଭିତର ପାଖ ଦେହରେ ପ୍ରାୟ ୩୫ ନିୟୁତ ଛୋଟ ଛୋଟ ଗ୍ରନ୍ଥି (ଗ୍ଲାଣ୍ଡ) ରହିଛି । ସେମାନେ ଦିନକୁ ପ୍ରାୟ ଦେଢ଼ ଲିଟର ରସ ତିଆରି କରନ୍ତି । ସେ ରସ ହାଇଡ୍ରୋକ୍ଲୋରିକ୍ ଏସିଡ୍ । ଏହି ଏସିଡ୍‌ର ସଂସ୍ପର୍ଶରେ ଆସି ପେପ୍‌ସିନୋଜେନ୍ ରସ ଉତ୍ତେଜିତ ହୁଏ ଓ

ଖାଦ୍ୟରେ ଯେତେ ପୁଷ୍ଟିସାର ଥାଏ ତାକୁ ହଜମ କରିବାରେ ଲାଗିପଡ଼େ । ପେପ୍‌ସିନ୍ ରସ ନ ଥିଲେ ରାମର ମାଂସ ଖାଇ ହଜମ କରିବାରେ ଅସୁବିଧା ହୁଅନ୍ତା । ହାଇଡ୍ରୋକ୍ଲୋରିକ୍ ଏସିଡ୍ ଥିବା ହେତୁ ଖାଦ୍ୟ ସଙ୍ଗେ ଯାଉଥିବା ଅନେକ କ୍ଷତିକାରକ ଜୀବାଣୁ ମଧ୍ୟ ନଷ୍ଟ ହୋଇଯାଆନ୍ତି । ତେଣୁ ରାମକୁ ମୁଁ ଅନେକ ରୋଗରୁ ରକ୍ଷାକରେ । ଏ ସବୁ ଛଡ଼ା ମୋ ଦେହରୁ ଅନ୍ୟପ୍ରକାର ରସ ମଧ୍ୟ ବାହାରେ । ଅଳ୍ପ ହେଲେ ମଧ୍ୟ ସେସବୁ ରସ ଦୁଧକୁ ଛିଣ୍ଡାଇ ଦେବାଠାରୁ ସ୍ନେହସାର ହଜମ କରିବାରେ ମଧ୍ୟ କିଞ୍ଚିତ୍ ସାହାଯ୍ୟ କରନ୍ତି ।

ମୋ ଦେହରେ ଖାଦ୍ୟସବୁ ଆସି ପହଞ୍ଚିବା ଆଗରୁ ରାମର ପାଟିରେ ଥିବା ଦାନ୍ତଗୁଡ଼ିକ ସେସବୁ ଖାଦ୍ୟକୁ ଚିକ୍‌ଚିକ କରିପକାଇ-ଥାନ୍ତି । ତା ନ ହୋଇଥିଲେ ମୋ ଦେହ ବଡ଼ ବଡ଼ ମୋଟା ଖାଦ୍ୟ ପଦାର୍ଥମାନଙ୍କ ଦ୍ୱାରା ଆଘାତ ପାଆନ୍ତା, ଘାଇଲା ହୁଅନ୍ତା । ମୋର ଦେହର ରସ ମଧ୍ୟ ସେସବୁ ବଡ଼ ପଦାର୍ଥକୁ ହଜମ କରି ପାରନ୍ତାନାହିଁ । ଫଳରେ ରାମ ଶୁଖିଯାଆନ୍ତା । ରାମ ଯେତେବେଳେ ବୁଢା ହୋଇଯିବ ଓ ତା ଦାନ୍ତ ପଡ଼ିଯିବ ମୁଁ ଯେ କ'ଣ କରିବ ଭାବିଲା ବେଳକୁ ମୋର ହାଲକ ଶୁଖିଯାଉଛି । ଗୁଡ ସେ ତ ପରକଥା । ରାମ କଣ ଦାନ୍ତ ଚିକିତ୍ସକମାନଙ୍କର ପରାମର୍ଶ ନେଇ ନକଲି ଦାନ୍ତ ଲଗାଇବ ନାହିଁକି ?

ଖାଦ୍ୟ ଆସି ମୋ ଦେହରେ ପଡ଼ିଲେ ମୋର ତଳ ପାଖରେ ଥିବା ମୁହଁ ବନ୍ଦ ହୋଇଯାଏ, ପ୍ରାୟ ଦୁଇ ବା ଅଢ଼େଇ ଘଣ୍ଟା ଯାଏ ମୋ ଦେହରେ ଥିବା ମାଂସପେଶୀମାନଙ୍କୁ ମୁଁ କାମରେ ଲଗାଇ ଦିଏ । ସେସବୁ କାମ କରିବାକୁ ମୋତେ ରାମର ମସ୍ତିଷ୍କରେ ଥିବା ହାଇ-ପୋଥାଲାମାସରୁ ନିର୍ଦ୍ଦେଶ ଆସିଥାଏ । ମାଂସପେଶୀମାନେ କାମକଲେ ମୋ ଦେହ ମୋଡ଼ି ଭାଙ୍ଗି ହେଲାଭଳା ହୁଏ ଓ ଖାଦ୍ୟପଦାର୍ଥ ସବୁ ଘାଣ୍ଟି ଚକଟି ହୁଅନ୍ତି । ତେଣୁ ମୋ ଦେହରୁ ବାହାରୁଥିବା ରସ ପ୍ରତ୍ୟେକ ଖାଦ୍ୟକଣା ସହିତ ମିଶି ଯାଆନ୍ତି ଓ ହଜମ କ୍ରିୟା ସମ୍ପାଦନ କରନ୍ତି । ପ୍ରାୟ ଅଢ଼େଇ ଘଣ୍ଟା ପର୍ଯ୍ୟନ୍ତ ଖାଦ୍ୟକୁ ପେଷି ଚକଟି କିଛି ହଜମ କଲାପରେ ସେସବୁକୁ ମୁଁ ଆସ୍ତେ ଆସ୍ତେ ତଳବାଟ ଦେଇ ଅଳ୍ପ ଅଳ୍ପ ଛୋଟ ଅନ୍ତନଳୀକୁ ଠେଲିଦିଏ । ମୋର ଏସିଡ଼୍ ମିଶା ଖାଦ୍ୟ ଛୋଟ

ଅନ୍ତନଳୀରେ ପଡ଼ିଲା ମାତ୍ରେ ସେଠା ଆଲ୍‌କାଲାଇନ୍ ରସ ଏସିଡ଼୍‌କୁ ଅକାମି କରି ପକାନ୍ତି । ତା ନହେଲେ ମୋ ଦେହର ଏସିଡ଼୍ ଗ୍ରେଟ ଅନ୍ତନଳୀର ଭିତର ପାଖ ଦେହକୁ ଖାଇ ପକାଇ ଘା କରିଦିଅନ୍ତା ।

ଆଳୁ-ଚକଟା ପରି ଖାଦ୍ୟ ମୁଁ ଅତି ସହଜରେ ଆୟତ୍ତ କରି ପକାଏ । ମାଂସ ପାଇଁ ମୋତେ କିଛି ସମୟ ଲାଗେ । ଶାଗ ଜାତୀୟ ଖାଦ୍ୟପାଇଁ ଆହୁରି ବେଶୀ ସମୟ ଦରକାର ପଡ଼େ । ମାଛ ସେନ୍ଦୁସାଧ ପାଇଁ ମୋତେ ବହୁ ପରିଶ୍ରମ କରିବାକୁ ହୁଏ । ଖାଇବା ପରେ ଯେମ ଯେଉଁଦିନ ଅତ୍ୟଧିକ ଥଣ୍ଡାପାଣି ବା ଆଇସ୍‌କ୍ରିମ୍ ଖାଇଥାଏ ସେ ଦିନ ମୋ ଦେହ ଥଣ୍ଡା ହୋଇଯାଏ । ଥଣ୍ଡା ହୋଇଗଲେ ମୋ ଦେହରୁ ରସ ବାହାରି ପାରେ ନାହିଁ କି ମୁଁ କାମ କରି ପାରେନାହିଁ । ତେଣୁ ହଜମ କରିବାକୁ ଡେରି ହୋଇଯାଏ । ସମର ପେଟ ଭାରିଭାରି ଲାଗେ । ଅନେକ ସମୟପରେ ମୋ ଦେହ ଗରମ ହୋଇଗଲେ ଯାଇ ମୁଁ ପୁଣି କାମରେ ଲାଗେ ।

ସମ ଯେତେବେଳେ ଖାଏ ମୁଁ କାମକରେ ଅନ୍ୟ ସମୟରେ ମୁଁ ମୋର ଚୁପ୍‌ଚାପ୍ ପଡ଼ିରହିଥାଏ । ଯଦିଓ ମୁଁ ଏସିଡ଼୍ ତିଆରି କରେ ତଥାପି ମୋ ଦେହ ସେଥିରେ ପୋଡ଼ିଯାଏ ନାହିଁ । କାରଣ ମୋ ଦେହକୁ ଘୋଡ଼ାଇ ରଖିବା ପାଇଁ ମୁଁ ବହୁ ପରିମାଣରେ ଲାଳ ମଧ୍ୟ ତିଆରିକରେ । ସେ ଲାଳ ଥିବାଯାକେ ଏସିଡ୍ ମୋ ଦେହରେ କିଛି କ୍ଷତି କରିପାରେ ନାହିଁ ।

ମୋର କାମ କରିବାର ଶକ୍ତି ସମର ମନର ଅବସ୍ଥା ଉପରେ ନିର୍ଭର କରେ । ସମର ମନ ମରିଗଲେ ବା କୌଣସି କଥାରେ ଦୁଃଖ କରି ସେ ଖୁବ୍ ଝାଉଁଳି ପଡ଼ିଲେ ମୋ ଅବସ୍ଥା ଦରଣ୍ଡା ଢକଡ଼ା ହୋଇଯାଏ । ମୁଁ ମଧ୍ୟ କାମ କରିପାରେ ନାହିଁ । ଘାଲେଇ ପଡ଼ି ରହେ । ସେତେବେଳେ ସମ ଯାହା ଖାଏ ମୋ ଦେହରେ ସେସବୁ ପଡ଼ିରହେ । ମୁଁ ଫୁଲି ଉଠେ । ସମ ଅସ୍ୱସ୍ତି ବୋଧ କରେ ।

ବେଳେ ବେଳେ ସମକୁ ମୁଁ ଚେତାଇ ଦେଇଥାଏ ଯେ ସେ ଯାହା ଯାହା ଖାଉଛି ମୋ ଦେହରେ ଯାଉନାହିଁ । ମୋ ଦେହ ଜଳ

ଜମୁଛି । ତେଣୁ ମୁଁ ଏତେ ଜୋରରେ ମୋଡ଼ି ଭାଙ୍ଗି ହୁଏ ଯେ ରାମ ଖାଇଥିବା ଜନଷତକ ବାହାରକୁ ଠେଲି ହୋଇ ଆସେ । ରାମ ବାନ୍ତି କରିବାକୁ ବାଧ୍ୟ ହୁଏ । ବେଳେ ବେଳେ ରାମ ବୁଝେ । ଆଜି ସେପରି କରେ ନାହିଁ । ମାତ୍ର ବେଳେ ବେଳେ ସାଙ୍ଗମେଳରେ ବହେର ହୋଇ ବହୁତ ଖାଇ ପକାଏ । ଫଳରେ ମୁଁ ସବୁ ନପାରି ରାମ ବାନ୍ତି ନ କଲାପାଏ ମୋଡ଼ି ଭାଙ୍ଗି ହେଉଥାଏ । ବାନ୍ତି କରି ସରିଲେ ମୁଁ ପୁଣି ଭଲ ଭାବରେ ରହେ ।

ମୋ ଦେହ ଖରାପ ହେଲେ ରାମର ଉପରି ପେଟରେ ବ୍ୟଥା ହୁଏ । ଉପର ପେଟରେ ବ୍ୟଥା ହେଲେ ସଙ୍ଗେ ସଙ୍ଗେ ଡାକ୍ତରଙ୍କ ପରାମର୍ଶ ନେବା ଦରକାର । କାରଣ ମୋ ଦେହରେ କେବେକେବେ କର୍କଟ ବେମାରି ହୁଏ । ରାମ ଜାଣିବା ଦରକାର ଯେ କର୍କଟ ବେମାରି ହେଲେ ସେ ଆଉ ବେଶି ଦିନ ବଞ୍ଚି ରହିପାରିବ ନାହିଁ । ତେଣୁ ଶୀଘ୍ର ଚିକିତ୍ସା ହେବା ଦରକାର ।

ରାମ ଯଦି ମୋତେ ଅତିରିକ୍ତ କାମ ଦେବାରୁ ବା ଅଖାଦ୍ୟ ସବୁ ଖାଇ ମୋତେ ବିରକ୍ତ କରିବାରୁ ବିରତ ହୁଅନ୍ତା, ତା ହେଲେ ମୁଁ ଆନେକ ଦିନ ତା ପାଇଁ କାମ କରନ୍ତି । ମୋ ଦେହ ଭଲରେ ରଖିବା ପାଇଁ ରାମକୁ ବହୁବାର ଚେତାଇ ଦେଉଛି ଯେ ସୁଷମ ଖାଦ୍ୟ ନିୟମିତ ଭାବରେ ଖାଇବା ଦରକାର । ମାଦକ ଦ୍ରବ୍ୟ, ସିଗାରେଟ୍ ବା କଫି ପ୍ରଭୃତି ବ୍ୟବହାର କରିବା ଉଚିତ ନୁହେଁ ।

ସକାଳ ସଂଧ୍ୟାରେ ପ୍ରାଣାୟାମ କଲେ ମଧ୍ୟ ଦେହ ଭିତର ବାୟୁ ଶୋଧନ ହୋଇଯାଇ ମୋ ଦେହ ଭଲ ରହେ । ଅତିରିକ୍ତ ଉପାସ ରହିବା ବା ଅତିରିକ୍ତ ଖାଦ୍ୟ ଖାଇବା ମୋ ପାଇଁ ଭଲ ନୁହେଁ । ତେଣୁ ସବୁକଥା ଯୁକ୍ତିଯୁକ୍ତ ଭାବରେ କଲେ ମୁଁ ଅନେକ ଦିନ ଭଲ ରହେ, ୮୦ । ୯୦ ବର୍ଷ ଯାଏ ସୁରୁଖୁରୁରେ କାମ କରିପାରେ । ରାମ କ'ଣ ଏସବୁ ମାନିବ ?

ରାମ ଯେତେବେଳେ ଖୁବ୍ ରାଗିଯାଏ ବା ବିରକ୍ତ ହୋଇଯାଏ ସେତିକିବେଳେ ମୁଁ ଖୁବ୍ ଲାଲ ହୋଇଯାଇ ଅନେକ ପରିମାଣରେ ରସ ତିଆରି କରି ପକାଏ । ରାମ କୌଣସି କଥାରେ ବ୍ୟସ୍ତ ହୋଇପଡ଼ିଲେ

ମୋର ଏସିଡ୍ ତିଆରି କରିବାର ଶକ୍ତି ଏତେ ପରିମାଣରେ ବଢ଼ିଯାଏ ଯେ ମୁଁ ମୋ ଦେହପ୍ରତି ଖାତିର ମଧ୍ୟ କରେ ନାହିଁ । ମୋର ମନେ ଅଛି ରାମ ଯେତେବେଳେ ସ୍ନାତକୋତ୍ତର ପରୀକ୍ଷା ଦେଉଥିଲା, ସେ ଏତେ ବ୍ୟସ୍ତ ହୋଇପଡ଼ିଲା ଯେ ମୁଁ ମୋର ଅନ୍ୟ କାମ ଭୁଲି ବହୁତ ପରିମାଣରେ ଏସିଡ୍ ତିଆରି କଲି । ଫଳରେ ମୋ ଦେହସାରା ଘା ହୋଇଗଲା । ସେସବୁ ଘା'ରୁ ରକ୍ତ ବାହାରି କଳା ରଙ୍ଗର ଝାଡ଼ା ମଧ୍ୟ ହେଲା । ରାମ ଖୁବ୍ ଶୁଖିଗଲା ଓ ଦୁର୍ବଳ ହୋଇଗଲା । କିଛି ଖାଇଲେ ମୋ ଦେହ ଜଳିଉଠିଲା । ମାତ୍ର ପରୀକ୍ଷା ସରିଲା ପରେ ମୁଁ ଚୁପ୍ ହୋଇଗଲି । ମୁଁ ଆଉ ଏସିଡ୍ ତିଆରି କଲି ନାହିଁ । ଘା ସବୁ ଶୁଖିଗଲା, ସବୁ ପୁଣି ଠିକ୍‌ମତେ ଚାଲିଲା ।

ରାମ ଯଦି ଅନେକ ଦିନପର୍ଯ୍ୟନ୍ତ ଏପରି ବ୍ୟସ୍ତ ହୋଇଥାନ୍ତା ତାହାହେଲେ ଘା ସବୁ ନ ଶୁଖି ସେପରି ରହନ୍ତା ଓ ମୋ ଦେହ ଆସ୍ତେ ଆସ୍ତେ ଖରାପ ହୋଇଯାନ୍ତା । ରାମ ଖାଇ ପାରନ୍ତା ନାହିଁ । ତଳ ପାଖ ବାଟ ମଧ୍ୟ ବନ୍ଦ ହୋଇ ଆସନ୍ତା । ରାମର ଅନେକ ଖରାପ ହୁଅନ୍ତା । ମାତ୍ର ରାମ ସେପରି ଲୋକ ନୁହେଁ । ବେପରୁଆ ଲୋକ ନୁହେଁ । ପରୀକ୍ଷା ସରିଲା ପରେ ରାମ ଆଉ ବ୍ୟସ୍ତ ହେଲା ନାହିଁ ।



# ଧୂସର ସ୍ୱପ୍ନ

## ଡକ୍ଟର ଜ୍ୟୋତ୍ସ୍ନା ପଟ୍ଟନାୟକ

ପ୍ରଶାନ୍ତବାବୁଙ୍କର ହଠାତ୍ ନିଦ ଭାଙ୍ଗିଗଲା । ଠିକ୍ ସେହି ସମୟରେ କୋଇଲି ଘଣ୍ଟାଟି ବୋବାଇ ଉଠିଲା କୁଉ-କୁଉ-କୁଉ-କୁଉ ଠିକ୍ ଛଅଟାରେ । ତାଙ୍କର ଦୃଷ୍ଟି ପଡ଼ିଲା ସେହି କୋଇଲି ଘଣ୍ଟାଟି ଉପରେ । ସମସ୍ତ ସମୟରେ ନିଦ ଭାଙ୍ଗିଗଲେ ମଧ୍ୟ ବିଛଣାରୁ ଉଠିବାକୁ ଇଚ୍ଛା ହୁଏନାହିଁ । ସେ ଭାବିବାକୁ ଲାଗିଲେ ସେହି ଘଣ୍ଟାଟି ବିଷୟରେ । ପ୍ରଶାନ୍ତ ବାବୁ ଘଣ୍ଟାଟିକୁ ଆଣିଥିଲେ ପଢ଼ାପାରି ବିଦେଶରୁ ଫେରିଲାବେଳେ ସୁଇଜରଲାଣ୍ଡର ସୁପ୍ରସିଦ୍ଧ ନଗରୀ ଜେନିଭାରୁ । ଏହି କୋଇଲି ଘଣ୍ଟାଟିର ବିଶେଷତ୍ୱ ହେଲା ଯେ ଠିକ୍ ସମୟ ହେଲାମାତ୍ରେ କୋଇଲିଟି ତା ଛୋଟ କୋଠରୀ ଭିତରୁ ବାହାରି ଆସି ସମୟ ଅନୁସାରେ ସେତିକି ଥର ବୋବାଇ ଦେଇ ପୁଣି ନିଜ କୋଠରୀ ଭିତରକୁ ଚାଲିଯାଏ । ପ୍ରଶାନ୍ତ ବାବୁଙ୍କର ଏହି କୋଇଲି ଘଣ୍ଟାଟି ବେଶ୍ ଏକ ସୌଖିନ ପଦାର୍ଥ । ସେ ଏହି ଘଣ୍ଟାଟିକୁ ବିଦେଶରୁ ଆଣିଥିବାରୁ ନିଜକୁ ବହୁତ ଧନ୍ୟ ମନେ-କରନ୍ତି । ତାଙ୍କର ସାଙ୍ଗସାଥୀମାନେ କହନ୍ତି, "ପ୍ରଶାନ୍ତ, ତୁ ତ ସୁବିଖ୍ୟାତ ଜେନିଭା ସହରରୁ ହଜାର ହଜାର ଘଣ୍ଟା ମଧ୍ୟରୁ ଏହି ସୁନ୍ଦର ବୋବାଉ ଥିବା କୋଇଲି ଘଣ୍ଟାଟିକୁ ପସନ୍ଦ କଲୁ । ସେହିପରି ତୋ ଜୀବନର ସାଥୀଟିକୁ ମଧ୍ୟ ତୁ ବେଶ୍ ପସନ୍ଦଯୋଗ୍ୟ ମନୋନୀତ କରି-ପାରିବୁ । ଆମମାନଙ୍କର ସହାୟତା ବୋଧହୁଏ ଆବଶ୍ୟକ ମନେକରିବୁ ନାହିଁ, ନା କ'ଣ କହୁଛୁ, ପ୍ରଶାନ୍ତ ?" ପ୍ରଶାନ୍ତବାବୁ ଖାଲି ମୁରୁକି ମୁରୁକି ହସି ଦିଅନ୍ତି ।

ପ୍ରଶାନ୍ତବାବୁ ବିଦେଶରୁ ଫେରିଲେ ପରେ ବର୍ତ୍ତମାନ [illegible]ଠାରେ ଗୋଟିଏ ଇଞ୍ଜିନିଅର ପୋଷ୍ଟରେ ନିଯୁକ୍ତ ପାଇଛନ୍ତି । ବାହାଘର ପ୍ରଶ୍ନ

ଏପର୍ଯ୍ୟନ୍ତ ଉଠିନାହାନ୍ତି । ଘରେ ସେ ଏକୁଟିଆ ଓ ତାଙ୍କର କୁକୁର ଲସି । ରୋଷେଇବାସ କରିବା ପାଇଁ ଚାକରଟିଏ । ପ୍ରଶାନ୍ତବାବୁ ଓ ସାଥୀ ଲସି ବେଶ୍ ଆନନ୍ଦରେ ଦିନ କଟାନ୍ତି । ଲସିକୁ ପ୍ରଶାନ୍ତବାବୁ କେବେ ପାଖରୁ ଛାଡ଼ନ୍ତିନାହିଁ । ସେ ଯେତେବେଳେ ଯାହା ଖାଆନ୍ତି ଲସି ସବୁବେଳେ ସେଥିର ଅଂଶୀଦାର ହୋଇଥାଏ । ସେ ମଧ୍ୟ ଯେତେବେଳେ ବାହାରକୁ ବୁଲି ଯାଆନ୍ତି ଲସି ସବୁବେଳେ ତାଙ୍କ ସାଙ୍ଗରେ ଥାଏ । ଅଧିକାଂଶ ସମୟ ପ୍ରଶାନ୍ତବାବୁ ଲସି ସାଙ୍ଗରେ ଖେଳି ଓ ତାକୁ କ୍ରୀଡ଼ା-କୌଶଳ ଶିଖାଇବାରେ ସମୟ କଟାଇ ଦିଅନ୍ତି । ବାକି ସମୟତକ ବୈଜ୍ଞାନିକ ପତ୍ରପତ୍ରିକା ଇତ୍ୟାଦି ପଢ଼ିବାରେ କଟିଯାଏ । ତାଙ୍କର ବିଜ୍ଞାନ ପ୍ରତି ଖୁବ ଆଗ୍ରହ ।

ସେଦିନ ରବିବାର, ପ୍ରଶାନ୍ତବାବୁ ଶେଯରୁ ଉଠିଲେ । ଦେଖିଲେ ପାଗଟା ବେଶ୍ ଭଲ ହୋଇଛି । ସକାଳୁ ଆକାଶ ଖୁବ ମେଘାଚ୍ଛନ୍ନ ଥିଲେ ମଧ୍ୟ ବର୍ତ୍ତମାନ ପରିଷ୍କାର ସଫାହୋଇ ନୀଳ ହୋଇଯାଉଛି । ସେ ଭାବିଲେ ବର୍ତ୍ତମାନ ଲସିକୁ ନେଇ ଗାଡ଼ିରେ ଟିକିଏ ବୁଲି ଆସିଲେ କିଛି ମନ୍ଦ ହେବନାହିଁ । ଲସି ମଧ୍ୟ ପ୍ରଶାନ୍ତବାବୁଙ୍କ ପାଖେ ପାଖେ ରହି ବେଶ୍ ବୁଲିବା ପ୍ରିୟ ହୋଇଯାଇଛି । ତାକୁ ଡାକିବା ମାତ୍ରେ ସେ ଖୁବ ଖୁସି ହୋଇଗଲା ଓ ସାଙ୍ଗେ ସାଙ୍ଗେ ଗାଡ଼ି ପାଖକୁ ଦୌଡ଼ିଗଲା । ପ୍ରଶାନ୍ତବାବୁ ସିଧା ରୋଡ଼ରେ ଡ୍ରାଇଭ୍ କରିବାକୁ ଲାଗିଲେ । କିଛିବାଟ ଚାଲିବା ପରେ ପ୍ରଶାନ୍ତବାବୁଙ୍କର ହଠାତ୍ ମନେହେଲା ଯେ ସେ ଆଜି ଉଠିଲା ପରେ କିଛି ଜଳଖିଆ ଖାଇନାହାନ୍ତି । ଲସି ମଧ୍ୟ କିଛି ଖାଇନାହିଁ । ତେଣୁ ଗୋଟିଏ ଭଲ ରେଷ୍ଟୁରାଣ୍ଟ ଖୋଜିବାକୁ ପଡ଼ିବ । ଗାଡ଼ିରେ ମଧ୍ୟ ପେଟ୍ରୋଲ ନାହିଁ । ଆଗେ ପେଟ୍ରୋଲ ନେଇଗଲେ ତା'ପରେ ଖାଇବା ବ୍ୟବସ୍ଥା ହେବ । କାଲି ଗୋଟିଏ ସାଙ୍ଗର ପାର୍ଟିରୁ ଫେରିଥିବାରୁ ନିଦମଧ୍ୟ ଭଲ ହୋଇନାହିଁ । ପ୍ରଶାନ୍ତବାବୁଙ୍କର ଧାରଣା ଯେ କେବଳ କ'ଣ ଶୋଇଲେହିଁ ବିଶ୍ରାମ ନେଲେ କ୍ଳାନ୍ତି ଦୂରହୁଏ । କିଛିବାଟ ଡ୍ରାଇଭ କରି ମନଇଚ୍ଛା ଫୁର୍ତ୍ତି କରିଦେଲେ ସେ ଭାବନ୍ତି ସବୁକିଛି ଦୂର ହୋଇଯିବ । ସେଥିପାଇଁ ସେ ଆଜି ବେଶି ସମୟ ନ ଶୋଇ ବୁଲି ବାହାରିଛନ୍ତି । ଆଗରେ ଏକ ପେଟ୍ରୋଲ ଷ୍ଟେସନ ଦେଖାଗଲା । ସେଠାରେ ସେ ଗାଡ଼ି ଅଟକାଇଲେ ଓ କିଛି ପେଟ୍ରୋଲ ଭର୍ତ୍ତି କରିବା ପାଇଁ ବରାଦ କରି ଦେଲେ ।

ପାଖରେ ଏକ ବଡ଼ କୋଠାଘର । ଘର ଆଗରେ ନିଜ ବଗିଚାରେ ଏକ ଦଶ ବାର ବର୍ଷର ଅନିନ୍ଦ୍ୟ ସୁନ୍ଦରୀ ଝିଅଟିଏ ତାର ଅତି ଆଦରର ବଲେଇ ଛୁଆକୁ କୋଳରେ ଧରି ବସିଛି । ଲୁସି ବଲେଇ ଛୁଆକୁ ଦେଖି ଗାଡ଼ିରୁ ଡେଇଁପଡ଼ି ଭୋ-ଭୋ ହୋଇ ଏକାଡ଼ିଆଁକେ ଯାଇ ଝିଅଟି ଆଗରେ ହାଜର । ପ୍ରଶାନ୍ତବାବୁ ଯେତେ ଡ଼ାକିଲେ ମଧ୍ୟ ଶୁଣିବାକୁ ନାହିଁ । କାଳେ ଲୁସି ବଲେଇ ଛୁଆକୁ ଆକ୍ରମଣ କରିବ ପ୍ରଶାନ୍ତବାବୁ ତା ପଛେ ପଛେ ଦୌଡ଼ିଲେ । କୁକୁରଟି କାଳେ ବଲେଇଛୁଆକୁ ଆକ୍ରମଣ କରିବ, ଏହି ଭୟରେ ଝିଅଟି ଅନନ୍ୟୋପାୟ ହୋଇ ହଠାତ୍ ଏକ ଅଦ୍ଭୁତ ଯନ୍ତ୍ର ତା ପକେଟରୁ ବାହାର କରି ଲୁସି ଆଡ଼କୁ ଦେଖାଇବା ମାତ୍ରେ ଲୁସି କୁଆଡ଼େ ଅଦୃଶ୍ୟ ହୋଇଗଲା । ଏହା ଦେଖି ପ୍ରଶାନ୍ତବାବୁ ବଡ଼ ଆଶ୍ଚର୍ଯ୍ୟ ହୋଇଗଲେ । ଘଟଣାଟା କ'ଣ ହେଲା ଜାଣିବା ପାଇଁ ସେ ମଧ୍ୟ ଆଗ୍ରହର ସହିତ ଝିଅଟି ପାଖକୁ ଦୌଡ଼ିଗଲେ । ଝିଅଟି ହଠାତ୍ ଦୌଡ଼ି-ଯାଇ ଘର ଭିତରେ ପଶିଯାଇ କବାଟ ଲଗାଇଦେଲା । ପ୍ରଶାନ୍ତବାବୁ ଯେତେ ଡ଼ାକିଲେ କେହି ଶୁଣିଲେ ନାହିଁ । ପ୍ରଶାନ୍ତବାବୁଙ୍କର ଲୁସି ଅତି ପ୍ରିୟ । ସେ ତାକୁ ଛାଡ଼ି ରହିବେ କିପରି ? ସେ ଭାବିପାରିଲେ ନାହିଁ ପ୍ରକୃତରେ ଲୁସିର ଏ କ'ଣ ହେଲା । ତାଙ୍କ ମୁଣ୍ଡ ଗୋଳମାଳ ହୋଇଗଲା । ସେ ଖୁବ୍ ଜୋରରେ ଦ୍ୱାରକୁ ବାଡ଼େଇବାରେ ଲାଗିଲେ । କିଛି ସମୟ ପରେ ଏକ ବୟସ୍କ ଲୋକ ଦ୍ୱାର ଖୋଲିଲେ । ପ୍ରଶାନ୍ତବାବୁ ଏକା ନିଶ୍ୱାସରେ ତାଙ୍କୁ ସବୁକଥା କହିଗଲେ ।

ଲୋକ ଜଣକ କହିଲେ, "ଦେଖନ୍ତୁ ମିଷ୍ଟର, ଆପଣ ଏତେ ବ୍ୟତିବ୍ୟସ୍ତ ହୋଇ ହେଉଛନ୍ତି କାହିଁକି ? ଆପଣଙ୍କ କୁକୁର ଏହି ପାଖରେ କେଉଁଠି ବୁଲୁଥିବ । ଅଉ ଆପଣ ଏକ ଆଶ୍ଚର୍ଯ୍ୟ କଥା କହୁଛନ୍ତି, କୁକୁରଟି ଅଦୃଶ୍ୟ ହୋଇଗଲା । ଆପଣ ବୋଧହୁଏ ବହୁ ସମୟ ଡ୍ରାଇଭ କରି କରି କ୍ଳାନ୍ତ ହୋଇ ପଡ଼ିଛନ୍ତି, ସେଥିପାଇଁ ଆପଣଙ୍କୁ ସେପରି ବୋଧହେଲା । ଚାଲନ୍ତୁ ଦେଖିବା ହୁଏତ ଅଦୂରରେ କେଉଁଠି ଥାଇପାରେ ।

ପ୍ରଶାନ୍ତବାବୁ ଓ ସେହି ଲୋକଜଣକ ଲୁସିକୁ ଖୋଜିବାକୁ ବାହାରିଗଲେ । ଲୋକ ଜଣକ କହିଲେ, "ଆପଣ ଗୋଟିଏ ପଟେ ଖୋଜନ୍ତୁ ମୁଁ ଆଉ ପଟେ ଖୋଜୁଛି ।" ପ୍ରଶାନ୍ତବାବୁ କହିଲେ, "ଦେଖନ୍ତୁ

ମୋ ଆଖିଆଗରେ ମୋ କୁକୁର କୁଆଡ଼େ ଅଦୃଶ୍ୟ ହୋଇଗଲା, ଆଉ ଆପଣ କଣ କହୁଛନ୍ତି ଖୋଜିବା ବୋଲି ।" ଲୋକ ଜଣକ ହସିଲେ, "ମୋ କଥା ବିଶ୍ୱାସ କରନ୍ତୁ, ଆପଣଙ୍କ କୁକୁର ନିଶ୍ଚୟ ଏଠାରେ କେଉଁଠି ଅଛି । କୁଆଡ଼େ ଅଦୃଶ୍ୟ ହୋଇ ଯାଇନାହିଁ । ଚାଲନ୍ତୁ ଖୋଜିବା, ଆଉ ଡେରି କରିବା ଉଚିତ ନୁହେଁ ।" କିଛି ସମୟ ଖୋଜା ଖୋଜି କରିବା ପରେ ଲିପି କେଉଁଆଡୁ ସାଙ୍ଗେ ସାଙ୍ଗେ ଦୌଡ଼ିଆସିଲା । ପ୍ରଶାନ୍ତବାବୁ ଏସବୁ ଦେଖି ବଡ଼ ଆଶ୍ଚର୍ଯ୍ୟ ହୋଇଗଲେ । ସେ କିଛି ସମୟ ପୂର୍ବରୁ ଲିପି ଲିପି ଏତେ ଡ଼ାକିଲେ ଅଥଚ ଶୁଣିଲା ନାହିଁ, କିନ୍ତୁ ସାଙ୍ଗେ ସାଙ୍ଗେ କୁଆଡ଼େ ଥିଲା ଚାଲି ଆସିଲା । ପ୍ରଶାନ୍ତବାବୁ ଲୋକଟିକୁ ଧନ୍ୟବାଦ ଦେବା ଛଡ଼ା ଭଦ୍ରତା ଦୃଷ୍ଟିରୁ ତାଙ୍କର ଆଉ କିଛି କର୍ତ୍ତବ୍ୟ ନଥିଲା । ସେ ସାଙ୍ଗେ ସାଙ୍ଗେ ଗାଡ଼ିପାଖକୁ ଫେରିଆସି ଗାଡ଼ିରେ ବସି ବାହାରି ଗଲେ । ମୁଣ୍ଡ ଭିତରେ ସେହି ଗୋଟିଏ ଚିନ୍ତା ଘଟଣାଟା ପ୍ରକୃତରେ କ'ଣ ହେଲା । ସେ ଅନୁଭବ କରିପାରିଲେ ଯେ, ତାଙ୍କୁ ଯଥେଷ୍ଟ ଡେରି ହେଲାଣି । ଲିପିକୁ ମଧ୍ୟ କମ୍ ହେଉନଥିବ । ସେ ଆହୁରି ଆଗକୁ ଆଗକୁ ଚାଲିଲେ । ହଠାତ୍ ତାଙ୍କ ଗାଡ଼ିରେ କିଏ ଗୋଟାଏ ଧକ୍କା ଲଗିଲା ପରି ମନେ ହେଲା । ଲିପି ଓ ସେ ନିଜେ ବାହାରେ ପଡ଼ିଗଲେ । ନୂଆ ପ୍ଲିମଥ୍ ଗାଡ଼ିଟି ମଧ୍ୟ ଗୁଡ଼ିଆଡ଼ ଭାଙ୍ଗି ଚୂରମାର ହୋଇଗଲା । ପ୍ରଶାନ୍ତବାବୁ ନିଜ ଅବସ୍ଥା ଭୁଲି ଲିପି ପାଖକୁ ଦୌଡ଼ିଗଲେ । ସେ ଦେଖିଲେ ଯେ ଲିପି ପୂର୍ଣ୍ଣ ସଂଜ୍ଞାହୀନ ଓ ରକ୍ତାକ୍ତ ହୋଇ ପଡ଼ିଯାଇଛି । ମୁଣ୍ଡରେ ଆଘାତ ଲାଗି ରକ୍ତର ସ୍ରୋତ ଛୁଟି ଚାଲିଛି । ଲିପିର ଏ ଅବସ୍ଥା ଦେଖି ତାଙ୍କ ହୃଦୟ ମାନିଲା ନାହିଁ । ସେ ଲିପିକୁ ଧରି ଅତି କରୁଣ ସ୍ୱରରେ 'ଲିପି' 'ଲିପି" ବୋଲି ଚିତ୍କାର କରିବାକୁ ଲାଗିଲେ । ଗାଡ଼ିର ଅବସ୍ଥା ଓ ନିଜର ଅବସ୍ଥା କଥା ସେ ସେତେବେଳେ ଭୁଲି ଯାଇଥିଲେ । ଏହି ଦୁର୍ଘଟଣା ଦେଖି ନିକଟରେ ଥିବା କେତେଜଣ ଲୋକ ଦୌଡ଼ି ଆସି ତାଙ୍କୁ ଧରିଉଠାଇଲେ । ପ୍ରଶାନ୍ତ ବାବୁ ଆଜି ପର୍ଯ୍ୟନ୍ତ କେବେ ଦୁର୍ଘଟଣାର ସମ୍ମୁଖୀନ ହୋଇ ନଥିଲେ । ସେ ଆମେରିକା ଭଳି ଜନବହୁଳ ରାଜ୍ୟରେ ଖୁବ ସ୍ପିଡ୍‌ରେ ଗାଡ଼ିଚଳାଇ ଆସିଛନ୍ତି, ଯେଉଁଠାରେ କି ଶହ ଶହ ଗାଡ଼ି ପ୍ରତିଦିନ ଦୁର୍ଘଟଣା ହୁଏ, କିନ୍ତୁ କେଉଁଠି ଦୁର୍ଘଟଣାର ସମ୍ମୁଖୀନ ହୋଇନାହାନ୍ତି । ଆଜି ହଠାତ୍ ଏ ଖୋଲା ରାସ୍ତାରେ । ଭାବି ପାରିଲେନି । ସେ ଚାରିଆଡ଼କୁ ଲକ୍ଷ୍ୟ କରି

ଦେଖିଲେ ଯେ ଗାଡ଼ି ଦୁର୍ଘଟଣା ହେବାର କୌଣସି କାରଣ ନାହିଁ । ତାଙ୍କୁ ବଡ଼ ଆଶ୍ଚର୍ଯ୍ୟ ଲାଗିଲା ଯେ କିଛି କାରଣ ନଥିବା ସତ୍ତ୍ୱେ ଗାଡ଼ିଟି ଏପରି ଚୂରମାର ହୋଇଗଲା କିପରି । ଏସବୁ ଦେଖି ସେ ବଡ଼ ଆଶ୍ଚର୍ଯ୍ୟ ହୋଇଗଲେ । ଲୋକଗୁଡ଼ିକ ତାଙ୍କୁ କହିଲେ, "ବାବୁ, ଚାଲନ୍ତୁ ଆମ ଗାଁରେ, ପାଖରେ ଗୋଟିଏ ଡାକ୍ତରଖାନା ଅଛି । ସେଠାରେ ଡାକ୍ତରବାବୁ ଆପଣଙ୍କ ଚିକିତ୍ସା କରିବେ ।"

ପ୍ରଶାନ୍ତବାବୁଙ୍କର କିନ୍ତୁ ଇଚ୍ଛା ହେଉ ନଥିଲା ଲୋକଙ୍କୁ ହେଲପର ଅବସ୍ଥାରେ ଛାଡ଼ି ଦେବାପାଇଁ । ଲୋକମାନେ କିନ୍ତୁ ତାଙ୍କୁ ଜବରଦସ୍ତି ପାଖ ଡାକ୍ତରଖାନାକୁ ନେଇଗଲେ । କିନ୍ତୁ ବଡ଼ ଆଶ୍ଚର୍ଯ୍ୟ କଥା ଯେ ସେଠାରେ ସେ ଦେଖିବାକୁ ପାଇଲେ ସେହି ଭଦ୍ରବ୍ୟକ୍ତିଙ୍କୁ, ଯେ କି ତାଙ୍କ କୁକୁରକୁ ଖୋଜି ଦେଇଥିଲେ । ଆଉ ଅନ୍ୟ ଦୁଇଜଣ ଲୋକ ମଧ୍ୟ ସେଠାରେ ଥିଲେ । ଦୁଇଜଣଙ୍କର ପୋଷାକରୁ ମନେ ହେଉଥିଲା କମ୍ପାଉଣ୍ଡର ବୋଲି । ତାଙ୍କ ମଧ୍ୟରେ ଜଣେ ବୈଜ୍ଞାନିକ ମଧ୍ୟ ଥିଲେ । ପ୍ରଶାନ୍ତବାବୁଙ୍କୁ ଗୋଟିଏ ଚେୟାର ଦିଆଗଲା ବସିବା ପାଇଁ ।

ଡାକ୍ତର ଜଣକ ସଙ୍ଗେ ସଙ୍ଗେ ପ୍ରଶାନ୍ତବାବୁଙ୍କ କ୍ଷତସ୍ଥାନ ଓ ଫାଟିଯାଇଥିବା ସ୍ଥାନ ଉପରେ ଏକ ପ୍ରକାର ଯନ୍ତ୍ରରୁ ଅଦୃଶ୍ୟ ରଶ୍ମି ପକାଇଲେ । ସଙ୍ଗେ ସଙ୍ଗେ କ୍ଷତସ୍ଥାନ ଗୁଡ଼ିକ ଭଲ ହୋଇ ସୁସ୍ଥସ୍ଥାନ ଭଳି ଦିଶିଲା । ରକ୍ତ ଆଦି ସବୁ ଉଭେଇଗଲା । ବୈଜ୍ଞାନିକ ଜଣକ ଖୁବ୍ ଗମ୍ଭୀର ଦେଖାଯାଉଥିଲେ । ସେ କହିଲେ, "ଦେଖନ୍ତୁ ପ୍ରଶାନ୍ତବାବୁ, ଆପଣଙ୍କୁ କେତେ ଗୁଡ଼ିଏ କାର୍ଯ୍ୟ ବଡ଼ ଆଶ୍ଚର୍ଯ୍ୟ ମନେହେଉଥିବ, ନୁହେଁ? ପ୍ରଥମତଃ ଆପଣଙ୍କ କୁକୁର ଅଦୃଶ୍ୟ ହୋଇଯିବା, ଦ୍ୱିତୀୟରେ କିଛି କାରଣ ନଥିବା ସତ୍ତ୍ୱେ ଆପଣଙ୍କର ନୂଆ ପ୍ଲିମଥ୍ ଗାଡ଼ିଟି ଚୂରମାର ହୋଇଯିବା । ଆମେ ଆପଣଙ୍କୁ ଏସବୁ ବିଷୟ ବୁଝାଇବା ପାଇଁ ପ୍ରସ୍ତୁତ ଅଛୁ, କିନ୍ତୁ ଏସବୁ ବିଷୟ ଜାଣିସାରିବା ପରେ ଆପଣ ଯେପରି ଆପଣଙ୍କ ସ୍ଥାନକୁ ଫେରିବା କଥା ନ ଭାବନ୍ତୁ । ଆମେ ଜାଣିପାରୁଛୁ ଯେ ଆପଣ ଜଣେ ବିଶିଷ୍ଟ ବୈଜ୍ଞାନିକ ଓ ଆପଣଙ୍କ ଭଳି ବୈଜ୍ଞାନିକମାନେ ଅନେକ ସହରରେ ବହୁତ ଉନ୍ନତି କରୁଛନ୍ତି । ଆମ ଅଞ୍ଚଳ କିନ୍ତୁ ପୃଥିବୀର ନୁହେଁ । ଆମେ ପୃଥିବୀ ବାହାରର ଲୋକ । ଆପଣଙ୍କ ପୃଥିବୀ

ଭୁବନାରେ ଆମେ ବଜ୍ଞାନରେ ବହୁତ ଉନ୍ନତ କରିପାରୁଛୁଁ, ଯାହାକ ଆପଣମାନେ କଳ୍ପନା କରି ପାରିବେନାହିଁ । ଆମେ କିନ୍ତୁ ଚାହୁଁନା ଯେ ଆମର ଏହି ଗୁପ୍ତ ତଥ୍ୟ ଗୁଡ଼ିକ ବାହାରେ ପ୍ରକାଶ ପାଉ। ତେଣୁ ଜଣେ ଆମେ ଅନ୍ୟମାନଙ୍କଠାରୁ ଦୂରରେ ରହିବାକୁ ଚେଷ୍ଟା କରୁଛୁ । ଆପଣ ଏହି ବିଷୟରେ କିଛି ଚିନ୍ତା କରୁଥିବାରୁ ଓ କିଛି ସନ୍ଦେହ ପ୍ରକାଶ କରିଥିବାରୁ ଆମେ ଜାଣିଶୁଣି ଆପଣଙ୍କ ଗାଡ଼ିକୁ ଦୁର୍ଘଟଣାର ସମ୍ମୁଖୀନ ହେବାକୁ ଦେଇଥିଲୁ। ଆପଣ, ଆପଣଙ୍କ କୁକୁର ଓ ଗାଡ଼ି ବିଷୟରେ ବ୍ୟସ୍ତ ହେବା ଉଚିତ ନୁହେଁ । ସେଗୁଡ଼ିକ ଆପଣଙ୍କୁ ଭଲ ଅବସ୍ଥାରେ ଫେରାଇ ଦିଆଯିବ ।"

ପ୍ରଶାନ୍ତବାବୁ ଏ କଥାଗୁଡ଼ିକ ଶୁଣିସାରି କହିଲେ, "ମୋ ଗାଡ଼ିଟା ଏକବାରେ ଚୂର୍ଣ୍ଣବିଚୂର୍ଣ୍ଣ ହୋଇଯାଇଛି । ତାକୁ ସଜାଡ଼ିବା ତ ଅସମ୍ଭବ । ଆଉ ଲସିର ହୃତ୍‌ସ୍ପନ୍ଦନ ଆସ୍ତେ ଆସ୍ତେ କମି କମି ଆସି ବନ୍ଦ ହୋଇଯାଉଛି । ସେ ତ ଆଉ ବଞ୍ଚିପାରିବେନାହିଁ ।" ଏତିକି କହି ପ୍ରଶାନ୍ତବାବୁ ଭେଁ ଭେଁ ହୋଇ କାନ୍ଦି ପକାଇଲେ ।

ବୈଜ୍ଞାନିକ ଜଣେ କହିଲେ, "ପ୍ରଶାନ୍ତବାବୁ, ଆପଣ ମୋଟେ ବ୍ୟସ୍ତ ହୁଅନ୍ତୁ ନାହିଁ । ଲସିର ହୃଦ୍‌ସ୍ପନ୍ଦନ ପୁରା ବନ୍ଦ ହୋଇଯାଇଥିଲେ ମଧ୍ୟ ଆମେ ସଜିବ କରିଦେଇ ପାରିବୁ । ଆମର ଏଠି କୌଣସି ଲୋକକୁ ମରିବାକୁ ଦିଆଯାଏ ନାହିଁ । ଆମେ ଆପଣଙ୍କୁ ସବୁ ବିଷୟ ବୁଝାଇ ଦେବୁ । ଆପଣ ମୋଟେ ବ୍ୟସ୍ତ ହୁଅନ୍ତୁ ନାହିଁ ।"

ଏହାପରେ ବୈଜ୍ଞାନିକ ଜଣେ ଏକ ସୁଇଚ୍ ଟିପିଲେ ଓ ସଙ୍ଗେ ସଙ୍ଗେ ଏକ ନବ୍ୟସୁନ୍ଦରୀ ତରୁଣୀ ଆସି ତାଙ୍କ ସମ୍ମୁଖରେ ଠିଆ ହୋଇଗଲା । ବୈଜ୍ଞାନିକ ତାଙ୍କୁ କହିଲେ, "ଦେଖ ପାରମିତା, ଏହି ଭଦ୍ର-ବ୍ୟକ୍ତିଙ୍କୁ ଭିତରକୁ ନେଇ ତାଙ୍କ ଜଳପାନର ବ୍ୟବସ୍ଥା କର ଓ ତାଙ୍କ-ପାଇଁ ଗୋଟିଏ ଭଲ ସୁସଜ୍ଜିତ ରୁମ୍ ମଧ୍ୟ ଯୋଗାଡ଼ କରିଦିଅ, ଯେପରିକି ତାଙ୍କର ଆଉ କୌଣସିଥିରେ କିଛି ଅସୁବିଧା ହେବ ନାହିଁ ।" ତରୁଣୀ ଜଣକ ପ୍ରଶାନ୍ତବାବୁଙ୍କୁ ସାଙ୍ଗେ ସାଙ୍ଗେ ଭିତରକୁ ଡାକି ନେଇଗଲା । ପ୍ରଶାନ୍ତବାବୁ ମଧ୍ୟ ଯନ୍ତ୍ରଚାଳିତ ଭଳି ତା ପଛେ ପଛେ ଚାଲିଲେ । କିଛିଦୂର ଗଲାପରେ ଏକ ସୁସଜ୍ଜିତ କୋଠରୀ ପଡ଼ିଲା ।

ସେହି ଘର ଭିତରେ ଖୁବ୍ ବଡ଼ ଗୋଟିଏ ଯନ୍ତ୍ର ଥିଲା । ତା ପାଖରେ ଗୋଟିଏ ଡାଇନିଂ ଟେବୁଲ ଓ କେତୋଟି ଚେୟାର ପଡ଼ିଥିଲା ।

ତରୁଣୀ ଜଣକ ପ୍ରଶାନ୍ତବାବୁଙ୍କୁ ଚେୟାର ଉପରେ ବସାଇ ତାର ଲମ୍ବାଲମ୍ବା ନଖକୁ ନଚାଇ କହିଲା, "ବସନ୍ତୁନା ପ୍ରଶାନ୍ତବାବୁ । ଏଇଟା ଆମର ଡାଇନିଂ ହଲ୍ । ଆପଣ ତଳ ରେଷ୍ଟୁରାଣ୍ଟ ଖୋଜୁଥିଲେ ଖାଇବା ପାଇଁ । ଏଠାରେ ଆମର ସବୁପ୍ରକାର ଖାଇବାର ବ୍ୟବସ୍ଥା ଅଛି । ଆପଣ ଯାହା ଚାହିଁବେ ତାହା ସାଙ୍ଗେ ସାଙ୍ଗେ ମିଳିପାରିବ । କୁହନ୍ତୁ ଆପଣ ବର୍ତ୍ତମାନ କ'ଣ ଖାଇବେ ?"

ଏ ସବୁ ଆଶ୍ଚର୍ଯ୍ୟ କଥାବାର୍ତ୍ତା, ଘରଦ୍ୱାର, ଯନ୍ତ୍ରପାତି ଦେଖି ପ୍ରଶାନ୍ତବାବୁଙ୍କର ଭୋକଶୋଷ ସେତେବେଳକୁ କୁଆଡ଼େ ଉଡ଼ିଗଲାଣି ।

"ଆପଣ ଅତ୍ୟଧିକ ବ୍ୟସ୍ତ ହୋଇପଡ଼ୁଛନ୍ତି ପ୍ରଶାନ୍ତବାବୁ । ଅପଣ ମୋଟେ ବ୍ୟସ୍ତ ହୁଅନ୍ତୁନି । ଆପଣଙ୍କ କାର୍, ଆପଣଙ୍କ ଲିପି ଯଥାସମୟରେ ଆପଣଙ୍କୁ ଫେରାଇଦିଆଯିବ । ସେମାନଙ୍କୁ ସାମୟିକ ନଷ୍ଟ କରି ଦିଆଯାଇଛି । ଆପଣ ତ ସକାଳୁ କିଛି ଖାଇ ନାହାନ୍ତି । ଆପଣ ତ ରେଷ୍ଟୁରାଣ୍ଟରେ ଖାଇବା ପାଇଁ ମନେ ମନେ ଇଚ୍ଛାପ୍ରକାଶ କରୁଥିଲେ ।"

"ଆପଣ କେମିତି ଜାଣିଲେ ପାରମିତା ଦେବୀ, ମୁଁ ସକାଳୁ କିଛି ଖାଇନି ବୋଲି ?"

"ଆପଣଙ୍କ ମନକଥା ଆମ ପକ୍ଷରେ ଜାଣିବା ବିଶେଷ କିଛି କଷ୍ଟକର ନୁହେଁ ପ୍ରଶାନ୍ତବାବୁ । ସେଥିପାଇଁ ଆମର ସ୍ୱତନ୍ତ୍ର ଯନ୍ତ୍ର କାମ କରୁଛି । ଆପଣ ପ୍ରତି ମୁହୂର୍ତ୍ତରେ କ'ଣ ଭାବୁଛନ୍ତି, ମୁଁ ଜାଣିପାରୁଛି । ଖାଲି ମୁଁ ନୁହେଁ, ଆମ ଡିରେକ୍ଟର ମଧ୍ୟ ଜାଣିପାରୁଛନ୍ତି ।"

"ଆପଣଙ୍କ ଡିରେକ୍ଟର କିଏ ?"

"ଯେଉଁ ଲୋକଙ୍କ ଆଦେଶରେ ମୁଁ ଆପଣଙ୍କୁ ଏଠାକୁ ନେଇ ଆସିଲି ।"

"ଆପଣମାନେ କେଉଁଠିକାର ଲୋକ ପାରମିତା ଦେବୀ ? ଆପଣ କ'ଣ ଆମ ପୃଥିବୀର ଲୋକ ନୁହନ୍ତି ! ଆପଣ ତ ଆମଭଳି ସମାନ ଦିଶୁଛନ୍ତି । ଠିକ୍ ଆମଭଳି କଥାବାର୍ତ୍ତା, ଚାଲିଚଳନ ସବୁ କରୁଛ ।"

"ଆମେ କିଏ, ଆମେ କେଉଁଠୁ ଆସିଛୁ, ସେ ବିଷୟରେ ଆପଣ ଜାଣିବାକୁ ଚେଷ୍ଟା କରନ୍ତୁନି ପ୍ରଶାନ୍ତବାବୁ ! ସେଇଟା ପୂରାପୂରି ଗୋପନୀୟ ।"

"ତା' ହେଲେ ମୋତେ ଯିବାକୁ ଦିଅନ୍ତୁ, ପାରମିତା ଦେବୀ ।"

"ଆପଣ ଯିବେ କେମିତି ? ଆପଣଙ୍କ ଗାଡି ନାହିଁ, କୁକୁର ନାହିଁ । ଏ ଦୁଇଟିକୁ ଛାଡ଼ି ଆପଣ ଯାଇ ପାରିବେ ତ ? ତା'ପରେ ଆପଣ କ୍ଷୁଧାର୍ତ୍ତ ।"

ଏତିକି କହି ପାରମିତା ଦେବୀ ଟେବୁଲ ଉପରେ ଏକ ସୁଇଚ ଟିପିଲେ । ସେହି ରୁମ୍ ର କାନ୍ଥ ଉପରେ ଥିବା କୋଇଲା ଘଣ୍ଟା କୁ-କୁ ହୋଇ ଦଶଥର ବାଜି ଉଠିଲା । ପ୍ରଶାନ୍ତବାବୁ ଠିକ୍ ଦଶଟାରେ ଘରୁ ଖାଇ ପିଇ ଅଫିସକୁ ଯାଆନ୍ତି । ସେ ସବୁଠାରୁ ଯେଉଁ ଖାଦ୍ୟକୁ ଅତ୍ୟଧିକ ଭଲ ପାଆନ୍ତି, ସେହି ଖାଦ୍ୟସବୁ ଗରମ ଗରମ ରନ୍ଧା ହୋଇ ଟେବୁଲ ଉପରକୁ ମନକୁ ମନ ଚାଲି ଆସିଲା । କଣ୍ଟା ଚାମଚ, ଗିଲାସ ସବୁକିଛି ।

"ଆଉ ଡେରି କାହିଁକି ପ୍ରଶାନ୍ତବାବୁ । ଏଥର ଆରମ୍ଭ କରନ୍ତୁ । ଏ ତ ସବୁ ଆପଣଙ୍କର ଅତି ପ୍ରିୟ ଖାଦ୍ୟ, ନୁହେଁ କି ପ୍ରଶାନ୍ତବାବୁ ?" ଯୁବତୀଟି ତାର ମୃଗାକ୍ଷି ଦୁଇଟିକୁ ନଚାଇ କହିଲା ।

ଟେବୁଲ ଉପରେ ବଢ଼ା ହୋଇଥିବା ଖାଦ୍ୟ ଆଡ଼କୁ ଆଖି ବୁଲାଇ ଆଣି ପ୍ରଶାନ୍ତବାବୁ କହିଲେ ।

"ମୋତେ ଆଶ୍ଚର୍ଯ୍ୟ ଲାଗୁଛି, ପାରମିତା ଦେବୀ, ମୁଁ କେଉଁ ଖାଦ୍ୟକୁ ଭଲ ପାଏ ଆପଣ ଜାଣିଲେ କେମିତି ? ମୁଁ ତ ଦେଖୁଛି, ମୋର ସବୁ ପ୍ରିୟ ଖାଦ୍ୟ ଆପଣ ତିଆରି କରାଇ ଆଣିଛନ୍ତି ।"

"ଫେର୍ ସେଇ ପ୍ରଶ୍ନ ? ଆପଣଙ୍କୁ ମୁଁ ସବୁ ଥରେ କହିଛି, ଆମେ ଆପଣଙ୍କ ମନକଥା ସବୁବେଳେ ଜାଣିପାରୁ । ଆପଣ କ'ଣ କ'ଣ ଖାଇବାକୁ ଭଲ ପାଆନ୍ତି ଆମେ ନଜାଣିବୁ କେମିତି ?"

"କିନ୍ତୁ ଏସବୁକୁ ବନ୍ଧାଇଲା କିଏ ?"

"ଜାଣିକି, ଆପଣଙ୍କ ସାମନାରେ ସେଇ ଯେଉଁ ଯନ୍ତ୍ରଟି ଥୁଆ ହୋଇଛି । ସେଇ ଆପଣଙ୍କ ମନକଥା ଜାଣିପାରି ଆପଣ ଠିକ୍ ଯେତେବେଳେ କ'ଣ ଖାଇବାକୁ ଭଲ ପାଆନ୍ତି, ଜାଣି ସେଇ ଅନୁସାରେ ରାନ୍ଧି ଥୋଇଦେଉଛି ।"

"କିନ୍ତୁ ଗୋଟିଏ କଥା ଆପଣ ଜାଣିପାରି ନାହାନ୍ତି ବୋଲି ମିତା ଦେବା । ଲସି ମୋ ପାଖରେ ନଖାଇଲେ ମୁଁ ଖାଏନା । ଆପଣ ଏକଥା ଭୁଲି ଯାଇଛନ୍ତି ।"

"ହଁ, ସତେତ; କିନ୍ତୁ କରାଯିବ କ'ଣ । ଆପଣଙ୍କ ଲସି ତ ମୃତ ।"

"କିନ୍ତୁ ଲସି ମୋ ପାଖରେ ନଖାଇଲେ ମୁଁ ତ ଖାଇ ପାରିବିନି । ମୁଁ ଆଗେ ଲସିକୁ ଖୁଆଇ ପରେ ଖାଏ ।"

"ବେଶ୍", ସୁଇଚ ଟିପି ନିଜ ଭାଷାରେ ଡ୍ରେକ୍ଟରଙ୍କ ସହ କ'ଣ କଥାବାର୍ତ୍ତା କଲେ କେଜାଣି ଆଉ ଏକ ସୁଇଚ୍ ଟିପି ଦେଲାମାତ୍ରେ ଲସି ଘର ଦୁଆରଦେଇ ପ୍ରଶାନ୍ତ ବାବୁଙ୍କ ପାଖକୁ ଦୌଡ଼ିଆସିଲା । ପ୍ରଶାନ୍ତବାବୁ ଲସିକୁ କୋଡ଼ରେ ବସାଇ ତାକୁ ଖାଇବାକୁ ଦେଲେ । ଲସି ଖୁବ୍ ଆନନ୍ଦରେ ଲାଙ୍ଗୁଳ ହଲାଇ ଖାଇବାକୁ ଲାଗିଲା । ଲସିକୁ ଖୁଆଇସାରି ପ୍ରଶାନ୍ତବାବୁ ନିଜେ ଖାଇଲେ । ଖାଦ୍ୟ ଗୁଡ଼ିକ ଖୁବ୍ ସୁସ୍ୱାଦୁ ଓ ଗରମ । ସତେ ଯେପରି କିଏ ତାଙ୍କୁ ବର୍ତ୍ତମାନ ରାନ୍ଧିକରି ଦେଲା ।

"କିନ୍ତୁ ଆପଣ ଯେ ଠିଆ ହୋଇ ରହିଲେ ବାରିମିତା ଦେବା ? ଆପଣ କିଛି ଖାଆନ୍ତି ନା ?"

"ଆମ ଖାଦ୍ୟ ଅଲଗା ପ୍ରଶାନ୍ତବାବୁ । ଆମେ ଆପଣଙ୍କ ଖାଦ୍ୟ ଖାଇ ପାରିବୁନି । ଅନ୍ୟ କୋଠରୀରେ ଆମ ଖାଦ୍ୟ ରନ୍ଧାହୋଇ ରହିଛି । ଆପଣ ଖାଇ ସାରନ୍ତୁ, ଆମେ ଖାଇବୁ ।"

ଚତୁରୀଟି କହିଲା, "ପ୍ରଶାନ୍ତବାବୁ, ଆପଣ ବୋଧହୁଏ ଖାଦ୍ୟ-ଗୁଡ଼ିକ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ, ନୁହେଁ ? ଆମର ଏଠାରେ ଏପରି ବ୍ୟବସ୍ଥା ଅଛି । ଆମର ଯାହା ଇଚ୍ଛା, ତାହା, ଆମେ ସାଙ୍ଗେ ସାଙ୍ଗେ ଖାଇ ପାରିବୁ । ଏହି ବଟନ୍ ଗୁଡ଼ିକ ଖାଲି ପ୍ରେସ୍ କଲେ ହେଲା । ଆମର ଏଠାରେ କେହି କେବେ ରାନ୍ଧନ୍ତି ନାହିଁ । ଏଗୁଡ଼ିକ ସବୁ ଆମେ ବିଜ୍ଞାନ ବଳରେ କରିପାରୁଛୁ । ଆହୁରି ମଧ୍ୟ ବହୁ ଆଶ୍ଚର୍ଯ୍ୟ କଥା ଅଛି ଜାଣିବା-ପାଇଁ, ଚାଲନ୍ତୁ ଡିରେକ୍ଟର ସାହେବଙ୍କ ପାଖକୁ ଯିବା । ସେ ଆପଣଙ୍କୁ ସବୁ କଥା ବୁଝାଇ କହିବେ ।"

ଚତୁରୀଟି ପ୍ରଶାନ୍ତବାବୁଙ୍କୁ ନେଇ ଡିରେକ୍ଟର ସାହେବଙ୍କ ପାଖରେ ଗୋଟାଏ ହଲରେ ପହଞ୍ଚାଇଦେଲା । ଡିରେକ୍ଟର ସାହେବ ସେତେବେଳକୁ ତାଙ୍କପାଇଁ ଅପେକ୍ଷା କରି ବସିଥିଲେ ।

ଡିରେକ୍ଟର କହିଲେ "ଦେଖନ୍ତୁ ପ୍ରଶାନ୍ତବାବୁ, ଏହି ରୁମ୍ ଟା ହେଲା ଆମର ସବୁ ଗୁପ୍ତ ତଥ୍ୟ ଥିବାରୁମ୍ । ଏହି ବିଷୟ ଯଦି ବାହାରେ ପ୍ରକାଶ ପାଇଯାଏ ତା'ହେଲେ ଆମେ ବହୁ ଅସୁବିଧାର ସମ୍ମୁଖୀନ ହେବୁ । ଆପଣ ସେହି ପୁରୁଣା କଥାକୁ ସ୍ମରଣ କଲେ, ମନେ ପକାନ୍ତୁ, ସେହି ବାଳକାଟି ଯେ କି ଆପଣଙ୍କ କୁକୁରକୁ ଅଦୃଶ୍ୟ କରିପାରିଥିଲା ଏକ ଅଦ୍ଭୁତ ଯନ୍ତ୍ର ସାହାର୍ଯ୍ୟରେ ।" ସେହି ଯନ୍ତ୍ରଟିକୁ ଡିରେକ୍ଟର ପ୍ରଶାନ୍ତବାବୁଙ୍କ ହାତକୁ ବଢ଼ାଇ ଦେଲେ । ଏହି ଯନ୍ତ୍ର ସାହାଯ୍ୟରେ ଆମେ ସବୁ ଜିନିଷକୁ ଅଦୃଶ୍ୟ କରିପାରିବା ଓ ପୁଣି ସେହି ପୁରୁଣା ଅବସ୍ଥାକୁ ଫେରାଇ ଆଣିପାରିବା । କେତୋଟି ଉଦାହରଣ ଦେଇ ତାଙ୍କୁ ଦେଖାଇଲେ ଓ ନିଜେ ପରୀକ୍ଷା କରିବାପାଇଁ ତାଙ୍କୁ କହିଲେ ।

"ଆଉ ସବୁଠାରୁ ଆଶ୍ଚର୍ଯ୍ୟ ଜିନିଷ ହେଲା ଯେ, ଆମେ ଗୋଟିଏ ଲୋକକୁ ସାଙ୍ଗେ ସାଙ୍ଗେ ମାରିଦେଇ ମଧ୍ୟ ପୁଣି ଜୀବିତ ଅବସ୍ଥାକୁ ଫେରାଇ ଆଣିପାରୁ ।" ଡିରେକ୍ଟର ସଙ୍ଗେ ସଙ୍ଗେ ଗୋଟିଏ ଗୁଳିରେ ତାଙ୍କ ଭିତରୁ ଜଣେ ଲୋକଙ୍କୁ ହତ୍ୟାକଲେ । ତାହା ଘଣ୍ଟିରୁ ରକ୍ତର ସ୍ରୋତ ଛୁଟି ଚାଲିଲା । ପ୍ରଶାନ୍ତବାବୁ ଏହା ଦେଖି ଅଚେତ ହେବା ଉପରେ । ଡିରେକ୍ଟର କହିଲେ, "ଆପଣ ନିଜକୁ ସଞ୍ଜତ କରନ୍ତୁ ପ୍ରଶାନ୍ତବାବୁ ।

ଏଇକ୍ଷଣି ସବୁ ଠିକ୍ ହୋଇଯିବ । ସାଙ୍ଗେ ସାଙ୍ଗେ ଲୋକଟି କପର ତାର ଜୀବନ ଫେରି ପାଉଛି ଦେଖନ୍ତୁ ।’’

ସେହି ଯନ୍ତ୍ର ସାହାଯ୍ୟରେ ଡରେକ୍ଟର ତା’ ପ୍ରତ୍ୟେକ ରକ୍ତ କଣିକାକୁ ପୁଣି ଗୁଡି ଭିତରେ ପୂରାଇ ଦେଲେ ଓ ସଙ୍ଗେ ସଙ୍ଗେ ଲୋକଟି ତାର ଜୀବନ ଫେରିପାଇଲା ଓ ପୂର୍ବଭଳି କଥାବାର୍ତ୍ତା କଲା ।

ଏହା ଦେଖି ପ୍ରଶାନ୍ତବାବୁଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ପ୍ରଶାନ୍ତବାବୁ ନିଜେ ଭାବିବାକୁ ଲାଗିଲେ । ଧନ୍ୟ ଏମାନେ । ବିଜ୍ଞାନ ବଳରେ କ’ଣ ନକରି ପାରୁଛନ୍ତି । ଆଉ ବା କ’ଣ ବାକି ରହିଲା । ସେ ଭାବିବାକୁ ଲାଗିଲେ ଆମ ଲୋକମାନେ ପ୍ରକୃତରେ କେତେ ପଛରେ ପଡ଼ିଛନ୍ତି । ତା’ପରେ ଡରେକ୍ଟର ତାଙ୍କୁ ସେହିପରି ଏକ ଯନ୍ତ୍ର ଉପହାର ଦେଲେ ଓ ସେହି ତରୁଣୀଙ୍କୁ ଡାକି ପ୍ରଶାନ୍ତବାବୁଙ୍କୁ ତାଙ୍କ ଶୋଇବା ରୁମ୍‌ରେ ପହଞ୍ଚାଇ ଦେଇ ଆସିବାପାଇଁ କହିଲେ । ଚାଲିବେଳେ ଡରେକ୍ଟର କହିଲେ, ‘‘ଦେଖନ୍ତୁ ପ୍ରଶାନ୍ତବାବୁ, ଆପଣଙ୍କୁ ସବୁ ସୁବିଧା ଦେବାସତ୍ତ୍ୱେ, ଆପଣ ଯେପରି ଏ ଜାଗା ଛାଡ଼ି ପଳାଇଯିବାକୁ ଚେଷ୍ଟା ନକରନ୍ତୁ । ଏହା କଲେ ଆପଣ ମହାବିପଦର ସମ୍ମୁଖୀନ ହେବେ ।’’

ପ୍ରଶାନ୍ତବାବୁ କିଛି ଉତ୍ତର ନଦେଇ ତରୁଣୀଙ୍କ ପଛରେ ଚାଲିଲେ ।

ପ୍ରଶାନ୍ତବାବୁ ନିଜର ଶୋଇବା ଘର ଦେଖି ଚମକି ପଡ଼ିଲେ । ରୁମ୍‌ଟି ଅତି ଲୋଭନୀୟ ଭାବରେ ସଜ୍ଜା ହୋଇଥିଲା ଯାହା କି ଅବର୍ଣ୍ଣନୀୟ । ସେହି ରୁମ୍‌ରେ ରଖାହୋଇଥିବା ସବୁକିଛି ଫର୍ଣ୍ଣିଚର ଓ କାନ୍ଥ ସ୍ୱଚ୍ଛ ଧଳା ରଙ୍ଗରେ ରଞ୍ଜିତ ହୋଇଥିଲା । ଧଳାରଙ୍ଗ ଦିଆ ହେବାର କାରଣ ସେଗୁଡିକ ଇଚ୍ଛା ଅନୁସାରେ ବିଭିନ୍ନ ରଙ୍ଗକୁ ବଦଳା ଯାଇପାରିବ । ଇଚ୍ଛାକଲେ ରୁମ୍‌ଟି ନାଲି, ନେଳି, ବାଇଗଣି ଇତ୍ୟାଦି ରଙ୍ଗର ହୋଇପାରିବ । ନିଜେ ଆନନ୍ଦ ପାଇବାପାଇଁ ସବୁକିଛି ସେ ରୁମ୍‌ରେ ଖଞ୍ଜା ହୋଇଥିଲା । ତରୁଣୀ ଜଣକ କହିଲା, ‘‘ପ୍ରଶାନ୍ତବାବୁ ଆପଣଙ୍କର ଯାହା କିଛି ଆବଶ୍ୟକ ମୁଁ ତାହା ପୂରଣ କରିବାପାଇଁ ପ୍ରସ୍ତୁତ ଅଛି । ଆପଣ ଖାଲି କହିଲେ ହେଲା ।’’

ପ୍ରଶାନ୍ତବାବୁ କହିଲେ, 'ନା ମୋର ଆଉକିଛି ଦରକାର ନାହିଁ, ଅଶେଷ ଧନ୍ୟବାଦ ।' ପ୍ରଶାନ୍ତବାବୁ ନିଜକୁ ନିଜେ ଭାବିବାକୁ ଲାଗିଲେ ଜଣେ ଲୋକର ଦୁନିଆରେ ଖୁସି ହେବାପାଇଁ ଖାଲି ମାତ୍ର ଏତିକି ଦରକାର । ବିନା ପରିଶ୍ରମରେ ସବୁ ଖାଇବା ପିଇବା ମିଳି ଯାଉଥିବ ଓ ନିଜେ ଉପଭୋଗ କରିବା ପାଇଁ ସବୁକିଛି ଜିନିଷ ତା ପାଖରେ ଥିବ ରେଡ଼ିଓ, ଟେଲିଭିଜନ, ଷ୍ଟେରିଓ ସବୁକିଛି ।

ଏହିପରି ଭାବରେ ପ୍ରଶାନ୍ତବାବୁ କିଛିଦିନ ରହିଲାପରେ ତାଙ୍କର ମନେହେଲା, ତାଙ୍କର ଯେମିତି ବହୁତ କିଛି ଅଭାବ ରହି ଯାଉଛି । ସେ ଯେକୌଣସି ଉପାୟରେ ନିଜ ଘରକୁ ଫେରିଯିବା ପାଇଁ ବ୍ୟାକୁଳ ହୋଇ ଉଠିଲେ, ଘରକୁ ଲେବେଳେ ହାତରେ ସେହି ଅଦ୍ଭୁତ ଯନ୍ତ୍ରଟିକୁ ନେବାପାଇଁ ଭାରି ଇଚ୍ଛା, ଯାହାକୁ ଦେଖିଲେ, ପ୍ରତ୍ୟେକ ବୈଜ୍ଞାନିକ ଚକିତ ହୋଇଯିବେ ଓ ପୃଥିବୀରେ ଏକ ନୂଆ ଚାଞ୍ଚଲ୍ୟ ସୃଷ୍ଟି ହେବ । ଏହି ତଥ୍ୟଗୁଡ଼ିକ କଥା କେମିତି ଯାଇ ନିଜ ସାଙ୍ଗସାଥୀମାନଙ୍କୁ କହିବେ ତାଙ୍କ ମନ ଆଉଟୁ ପାଉଟୁ ହେବାକୁ ଲାଗିଲା ।

ଲିପି ସବୁବେଳେ ପ୍ରଶାନ୍ତବାବୁଙ୍କ ପାଖେ ପାଖେ ଥାଏ । ତାକୁ ମଧ୍ୟ ଖାଇବାକୁ ମିଳୁଛି ବୋଲି ତା ମନ ବେଶ୍ ଖୁସି । ତା ଛଡ଼ା ତା'ର ପ୍ରିୟ ମାଷ୍ଟରଙ୍କ ତ ସବୁବେଳେ ତା ପାଖେ ପାଖେ । ଆଉ ତାର ବା କ'ଣ ଅଭାବ । ବୈଜ୍ଞାନିକ ପ୍ରଶାନ୍ତବାବୁ ଲିପି ଅବସ୍ଥାକୁ ନିଜ ସଙ୍ଗରେ ତୁଳନା କଲେ । ପଶୁ ପାଇଁ ପିନା ସେତକ ହୋଇଗଲେ ସେ ଯଥେଷ୍ଟ ଖୁସିରେ ରହି ପାରିବ, କିନ୍ତୁ ମନୁଷ୍ୟ ? ସେତ ପଶୁଠାରୁ ବହୁଗୁଣ ଉଚ୍ଚରେ । ଭଗବାନଙ୍କ ଜୀବଜଗତରେ ମନୁଷ୍ୟ ହେଉଛି ଶ୍ରେଷ୍ଠକୃତି । ସେ କ'ଣ କେବେ ଏତିକି ସହଜରେ ସନ୍ତୁଷ୍ଟ ରହିପାରେ ।

ଇତିମଧ୍ୟରେ ତରୁଣୀ ପାରମିତା ଦେବୀଙ୍କ ଆଡ଼କୁ ପ୍ରଶାନ୍ତବାବୁ କ୍ରମଶଃ ଆକୃଷ୍ଟ ହୋଇ ପଡ଼ୁଛନ୍ତି । ଏଣେ ପାରମିତା ଦେବୀ ପ୍ରାଣମୂର୍ଚ୍ଛା ଉଦ୍ୟମ ଚଳାଇଛନ୍ତି, ପ୍ରଶାନ୍ତବାବୁଙ୍କର ମନକୁ ବଦଳାଇବା ପାଇଁ, କିନ୍ତୁ ପ୍ରଶାନ୍ତବାବୁ ସବୁବେଳେ ଚିନ୍ତାମଗ୍ନ । ତାଙ୍କର ସେହି ଏକମାତ୍ର

ଚନ୍ଦ୍ରା କପର ଘରକୁ ଫେରିବେ, ସେକଥା ଅଭୁତ ଜାଗାରୁ । ସାଙ୍ଗରେ ସେ ଯଦି ପାରମିତା ଦେବୀଙ୍କୁ ନେଇ ଚଳାଇ ପାଇପାରନ୍ତି, ତେବେ ସବୁଠାରୁ ଆନନ୍ଦଦାୟକ ହେବ । ପାରମିତା ଦେବୀ ସୁନ୍ଦରୀ, ଅକର୍ଷଣୀୟା, କଥା ତାଙ୍କର ଅମୃତ ଭଳି । ଗ୍ଭଲିଚଳନ, କଥାବାର୍ତ୍ତା, ସବୁଥିରେ ସେ ପ୍ରଶାନ୍ତବାବୁଙ୍କୁ ନିଜର କରି ନେଇପାରିଛନ୍ତି । ପାରମିତା ଦେବୀ ତାଙ୍କର ଶୟନେ, ସ୍ୱପନେ, ଜାଗରଣେ ସର୍ବଦା ଚିନ୍ତାର ବିଷୟ କିନ୍ତୁ ଏହା କଣ କେବେ ସମ୍ଭବପର ହେବ ? ଏଣେ ପାରମିତା ଦେବୀଙ୍କୁ ଛାଡ଼ି, ସେ କଣ କେବେ ବଞ୍ଚି ପାରିବେ ?

ପ୍ରଶାନ୍ତ ବାବୁଙ୍କୁ ସଦାସର୍ବଦା ଚିନ୍ତାମଗ୍ନ ଦେଖି ପାରମିତା ଦେବୀ ଦିନେ ପଚ୍ଚରିଲେ, "ପ୍ରଶାନ୍ତବାବୁ, ଆପଣଙ୍କର କ'ଣ କେଉଁଥିରେ କିଛି ଅଭାବ ହେଉଛି କି ? ଆପଣ ସବୁବେଳେ କାହିଁକି ଏତେ ଗମ୍ଭୀର ଓ ଚିନ୍ତାମଗ୍ନ ଥିଲା ଭଳି ଜଣାପଡ଼ୁଛନ୍ତି ? ମୁଁ କ'ଣ ଆପଣଙ୍କୁ ଯାହା ଯାହା ଆନନ୍ଦ ଦେବା ଦରକାର କେଉଁଥିରେ କିଛି ତ୍ରୁଟି କରିଛି ? କୁହନ୍ତୁ, ପ୍ରଶାନ୍ତବାବୁ ଆପଣଙ୍କର ପ୍ରକୃତରେ ଆଉ କଣ ଦରକାର ବା ଆପଣଙ୍କର ଏଠାରେ କ'ଣ ଅସୁବିଧା ହେଉଛି ?"

ପ୍ରଶାନ୍ତବାବୁ ହଠାତ୍ ନିଜ ଭାବନାରୁ ଚେଇଁରୁ ଖସିଆସି କହିଲେ, "ନା, ନା, ପାରମିତା ଦେବୀ, ଆପଣଙ୍କର କେଉଁଥିରେ କିଛି ତ୍ରୁଟି ନାହିଁ, ହେଲେ ଆପଣ ନିଜେ ଭାବି ଦେଖନ୍ତୁ ତ, ମଣିଷର କଣ ଆନନ୍ଦିତ ହେବାପାଇଁ ଏତିକି ଯଥେଷ୍ଟ ?"

"ଆପଣ କ'ଣ କହିବାକୁ ଗ୍ଭହାନ୍ତି, ପ୍ରଶାନ୍ତବାବୁ ?"

"ଦେଖନ୍ତୁ, ପାରମିତା ଦେବୀ ସମାଜରେ ଭାଇ ଭଉଣୀ, ସ୍ୱାମୀ-ସ୍ତ୍ରୀ, ବାପ ମା'ଙ୍କର ଯେଉଁ ଅପୂର୍ବ ସ୍ନେହ ମମତା, ସେଗୁଡ଼ିକ କ'ଣ ଆପଣ ଏଠାରେ ପାଇପାରନ୍ତି ? କିଛି ପରିଶ୍ରମ ପରେ ବିଶ୍ରାମ । ସେଥିରେ କି ଅପାର ଆନନ୍ଦ, ଆଉ ଏଠାରେ ସେ ସବୁ କିଛି ନାହିଁ । ଆଚ୍ଛା କହିଲେ ପାରମିତା ଦେବୀ, ଆପଣ କ'ଣ ପ୍ରକୃତରେ ଏହା ଭିତରେ ରହି ବିଶେଷ ଖୁସି ହୋଇପାରୁଛନ୍ତି । ମୁଁ ତ କାହିଁକି ଏହି କିଛିଦିନ ଭିତରେ ପୂରା ଅଣନିଶ୍ୱାସୀ ହୋଇ ଗଲିଣି ।"

ପାରମିତା ଦେବୀ ହସିଲେ, ଏକ ମାଦକତାଭରା ହସ । "ମୁଁ ବୁଝିଛି ପ୍ରଶାନ୍ତବାବୁ, ଆପଣ ପ୍ରକୃତରେ କ'ଣ ଚାହାନ୍ତି ।" ପାରମିତା ଦେବୀ କେବେ ପ୍ରଶାନ୍ତବାବୁଙ୍କ ବିଚ୍ଛେଦ ଚାହୁଁ ନଥିଲେ । ସେ ବହୁତ ଚେଷ୍ଟା କରିଥିଲେ ପ୍ରଶାନ୍ତବାବୁଙ୍କୁ ଏଠାକାର ସ୍ଥାୟୀ ବାସିନ୍ଦା କରି ରଖି ନେବାକୁ । କିନ୍ତୁ ପ୍ରଶାନ୍ତବାବୁଙ୍କଠାରୁ ଏହିପରି କଥା କେତେ ପଦ ଶୁଣି ପାରମିତା ଦେବୀଙ୍କର ମନ କ୍ଷଣିକ ଦୁଃଖ ହେଲା । ନିଜ ମନର ଦୁଃଖକୁ ପ୍ରକାଶ ନ କରି କହିଲେ, 'ଚାଲନ୍ତୁ ପ୍ରଶାନ୍ତବାବୁ କିଛି ସମୟ ବାହାରେ ବୁଲି ଆସିବା । ଆପଣ ତ କେବେ କେବେ ଲସିକୁ ନେଇ ବାହାରେ ବୁଲିଯାନ୍ତି । ଆପଣ ଏଠି ବସି ବସି ଏହି ଟେଲିଭିଜନ, ରେଡିଓ, ରେକର୍ଡ ପ୍ଲେୟାର ଶୁଣି ଶୁଣି ବ୍ୟସ୍ତ ହୋଇ ପଡ଼ିବେଣି ।

ଏତିକି କହି ସେ ପ୍ରଶାନ୍ତବାବୁ ଓ ଲସିକୁ ଧରି ରୁମରୁ ବାହାରି ପଡ଼ିଲେ । ହଠାତ୍ ଠିଆ ହୋଇଯାଇ କହିଲେ, "ଆରେ ଆପଣଙ୍କ ଗାଡ଼ିତ ଧ୍ୱଂସ ପାଇଯାଇଛି । ଯିବା କେମିତି ? ସଙ୍ଗେ ସଙ୍ଗେ ସୁଇଚ୍ ଟିପି ଡ୍ରାଇଭରଙ୍କ ସହିତ କ'ଣ କଥାହେଲେ କେଜାଣି କହିଲେ, "ଆପଣଙ୍କ ପ୍ଲିମଥ ଗାଡ଼ି ଠିକ୍ ହୋଇ ବର୍ତ୍ତମାନ ଗେଟରେ ଠିଆ ହୋଇଛି ପ୍ରଶାନ୍ତବାବୁ । ଚାଲନ୍ତୁ ଆମେ ସେଥିରେ ବୁଲି ଆସିବା ।"

"ମୁଁ ଏହି ଯନ୍ତ୍ରଟାକୁ ସଙ୍ଗରେ ନେଇ ପାରିବି କି ପାରମିତା ଦେବୀ ? ବଡ଼ ଅଦ୍ଭୁତ ଯନ୍ତ୍ର ଇଏ । ମୋତେ ବଡ଼ ଭଲ ଲାଗୁଛି ।

ଆପଣ ଏ ଯନ୍ତ୍ରକୁ ସଙ୍ଗରେ ନେବେ ? କ'ଣ ଦରକାର ?'

"ନେଲେ କ୍ଷତି କ'ଣ ? ସଙ୍ଗରେ ଥାଉ ? କାଳେ ବାଟରେ କିଛି ଦରକାରରେ ଆସିପାରେ ।'

"ଲସିକୁ ନେବେ ନା ଛାଡ଼ିଦେଇ ଯିବେ ଏଠି ?'

"ନା,ନା ଲସି ବି ଯିବ । ଆପଣ, ମୁଁ ଆଉ ଲସି । ତା ସହିତ ଏ ଯନ୍ତ୍ର ।"

ପାରମିତା ଦେବୀ କିଛିତ ଅନ୍ୟମନସ୍କ ହେଲାଭଳି ଜଣାପଡ଼ିଲେ । କିଛି ସମୟ ଚିନ୍ତା କରି କହିଲେ, "ହେଉ ଚାଲନ୍ତୁ । ଆପଣଙ୍କ ମନରେ ଆଘାତ ଦେବାକୁ ମୁଁ ଚାହୁଁନି ପ୍ରଶାନ୍ତବାବୁ ।"

ନିଜ ପ୍ରିୟ ମଥ ଚାଲରେ ଷ୍ଟିଅରିଂ ଧରିଲେ ପ୍ରଶାନ୍ତବାବୁ । ପାଖରେ ପାରମିତା ଦେବୀ ନିଜ ଦେହକୁ ଲଗି । ପଛ ସିଟରେ ଲିସି । କିଛି ଦୂର ଗଲାପରେ ପ୍ରଶାନ୍ତବାବୁ ବଡ ତନ୍ମୟ ହୋଇ ଆରମ୍ଭ କଲେ, "ପ୍ରକୃତି ଦେବୀ କେଡ଼େ ସୁନ୍ଦର, ଦେଖୁଛନ୍ତି ପାରମିତା ଦେବୀ ? ସୁଦୂର-ଆଡ଼େ ଦିଗନ୍ତ ବିସ୍ତାରିତ ପର୍ବତମାଳା, ଅଦୂରରେ ନିବିଡ଼ ନିକୁଞ୍ଜ ପୁଞ୍ଜିତ କାନନ ଶ୍ରେଣୀ, ନିକଟରେ ବିବିଧ ବୃକ୍ଷ ପରିଶୋଭିତ ନୟନ ତୃପ୍ତିକର ଉପବନ କ'ଣ ଲୋଭେଇ ଜାଣେନି ପାରମିତା ଦେବୀ ?"

"ଆପଣ ବଡ଼ କଳ୍ପନାବିଳାସି ହୋଇ ପଡ଼ଛନ୍ତି ପ୍ରଶାନ୍ତବାବୁ ।"

"ନା ପାରମିତା ଦେବୀ, ମୁଁ ବାସ୍ତବତାକୁ ନେଇ ଉପଭୋଗ କରିବାକୁ ଚାହେଁ । ଖାଲି କଳ୍ପନାରେ ବିଭୋର ହେବାକୁ ଚାହେଁନ । ଚାଲନ୍ତୁ, ପାରମିତା ଦେବୀ, ଆମେ ଏଠାରୁ ଚାଲିଯିବା । ମୁଁ ଆପଣଙ୍କୁ ନେଇ ସୁଖର ସଂସାର ଗଢ଼ିବାକୁ ଚାହେଁ ।"

ପାରମିତା ଦେବୀଙ୍କ ଉତ୍ତର ପ୍ରତି ଧ୍ୟାନ ନ ଦେଇ ପ୍ରଶାନ୍ତବାବୁ ଜୋରରେ ଗାଡ଼ି ନିଜଘର ଅଭିମୁଖେ ଛୁଟାଇ ଦେଲେ । ସେ ମନେ ମନେ ଭାବିଲେ, ପାରମିତା ଦେବୀଙ୍କଠାରେ ପ୍ରତିବାଦ କରିବା ଶକ୍ତି ନାହିଁ । ସେ କ'ଣ ତାଙ୍କୁ ଆଉ ଅସ୍ୱୀକାର କରିପାରିବେ ?

"ଦେଖନ୍ତୁ, ପ୍ରଶାନ୍ତବାବୁ । ଆପଣଙ୍କୁ ଡ଼ିରେକ୍ଟର ଯାହା କହିଥିଲେ ଆପଣ ଭୁଲି ଯାଉଛନ୍ତି । ଆପଣ ଆଉ ନିଜ ଘର ସଂସାରକୁ ଫେରିଯିବାକୁ ଚେଷ୍ଟା କରନ୍ତୁନି । ଫେରିଲେ ବିପଦ ।"

ପ୍ରଶାନ୍ତବାବୁ ପାରମିତା ଦେବୀଙ୍କ କଥାକୁ ନ ଶୁଣି ଆହୁରି ଜୋରରେ ଗାଡ଼ି ଚଳେଇ ଦେଲେ । କିଛିବାଟ ଯିବା ପରେ ହଠାତ୍ କ'ଣ ହେଲା କେଜାଣି ଗାଡ଼ିଟି ମନକୁମନ ଅଟକି ଗଲା । ପରେ ପରେ ଏହା ଆଗକୁ ଯିବ କ'ଣ ପଛେଇ ପଛେଇ ଆସିଥିବା ସ୍ଥାନକୁ ଫେରି-ଆସିଲା । ପ୍ରଶାନ୍ତବାବୁ ଯେତେ ଚେଷ୍ଟା କଲେବି ଆଗକୁ ଆଉ ଚଳାଇ ପାରିଲେନି । ନିଜ ସ୍ଥାନକୁ ଫେରି ଆସିବାକ୍ଷଣି ଦୁଇଜଣ ପ୍ରହରୀ ପହଞ୍ଚି ଯାଇ ତାଙ୍କୁ ଡ଼ିରେକ୍ଟରଙ୍କ କୋଠରୀକୁ ନେଇଗଲେ । ଡ଼ିରେ-

ଙ୍ଗରଙ୍କର ଦୃଷ୍ଟି ପ୍ରଶାନ୍ତବାବୁଙ୍କ ଉପରେ ପଡ଼ିଲାମାତ୍ରେ, ପ୍ରଶାନ୍ତବାବୁ ଦୌଡ଼ି ପଳାଇବାକୁ ଚେଷ୍ଟା କରୁଥିଲେ, କିନ୍ତୁ ସେହି ପ୍ରହରୀଦ୍ୱୟ ତାଙ୍କୁ ଆଣି ପୁଣି ତାଙ୍କ ସାମନାରେ ଠିଆ କରାଇ ଦେଲେ ।

ଡିରେକ୍ଟର କହିଲେ, "ବୃଥା ଚେଷ୍ଟା କରନ୍ତୁ ନାହିଁ ପ୍ରଶାନ୍ତ-ବାବୁ । ମୁଁ ଆପଣଙ୍କୁ ପ୍ରଥମରୁହିଁ ସେପ୍ରା କହିଥିଲି । ବର୍ତ୍ତମାନ ଆପଣଙ୍କୁ ମୃତ୍ୟୁଦଣ୍ଡ ଦେବା ଛଡ଼ା ଆମର ଅନ୍ୟ ଉପାୟ ନାହିଁ ।"

ମୃତ୍ୟୁଦଣ୍ଡ ନା ଶୁଣି ପ୍ରଶାନ୍ତବାବୁଙ୍କ ଛାତି ଦାଉଁକିନା ହୋଇଗଲା । ମୁଖମଣ୍ଡଳ କଳାକାଠ ପଡ଼ିଗଲା । ସତେ ଯେମିତି ଦେହର ସବୁ ରକ୍ତ ପାଣି ପାଲଟି ଯାଉଛି ।

ପ୍ରଶାନ୍ତବାବୁଙ୍କର ମୁହଁରେ ଏକ ପ୍ରକାର କାଚର ଘୋଡ଼ଣୀ ଘୋଡ଼ାଇ ଦିଆଗଲା । ପାରମିତା ଦେବୀଙ୍କୁ ଏକ ଆଶ୍ଚର୍ଯ୍ୟ ଜନକ ବନ୍ଧୁକ ଦିଆଗଲା ପ୍ରଶାନ୍ତବାବୁଙ୍କୁ ଗୁଳି କରିବା ପାଇଁ । ସେ ଗଣି ଚାଲିଲେ ଏକ ଦୁଇ-× × × ପ୍ରଶାନ୍ତବାବୁଙ୍କର ହଠାତ୍ ନିଦ ଭାଙ୍ଗିଗଲା । ଦେଖିଲେ ଲୋକଟି ଗାଡ଼ିରେ ପେଟ୍ରୋଲ ଦେଇସାରି ବାକି ପଇସାତକ ଫେରାଉଛି । ପ୍ରଶାନ୍ତବାବୁଙ୍କୁ ଲୋକଟି କହିଲା, "ବାବୁ,ଆପଣଙ୍କୁ ମୁଁ ବହୁତ ସମୟ ହେଲା ଡାକୁଛି; କିନ୍ତୁ ଆପଣ ନିଦରେ ଶୋଇ ପଡ଼ିଛନ୍ତି । ଏହି ନିଅନ୍ତୁ ବାକି ପଇସା ।" ପ୍ରଶାନ୍ତବାବୁ ବୁଝିଲେ ଯେ, ଯାହାସବୁ ଘଟିଗଲା ସେସବୁଡ଼ାକ ଖାଲି ସ୍ୱପ୍ନ । ଯାହାକି ସେ କେବେ ଜୀବନରେ ଭୁଲି ପାରିବେ ନାହିଁ । ଦେଖିଲେ ପଛରେ ସିଟର ଲସି ଶ୍ରୀମତୀ ଶୋଇପଡ଼ିଛନ୍ତି । ତାଙ୍କୁ ବି କମ୍ ଶ୍ରୀମତୀ ହେଉନାହିଁ । ସେ ସିଧା ଡ୍ରାଇଭ କଲେ ରେଷ୍ଟୁ-ରାଣ୍ଟ ଆଡ଼କୁ । ତାଙ୍କର ମନେ ପଡ଼ୁଥାଏ ସ୍ୱପ୍ନରେ ଦେଖିଥିବା କଥାଗୁଡ଼ିକ । ପାରମିତା ଦେବୀଙ୍କ ସେହି ହସ ହସ ମୁଖମଣ୍ଡଳ, ସୁମଧୁର କଥା ଓ ସୁସ୍ୱାଦୁ ଖାଦ୍ୟ ।



# ନିଆଁ ଲଗା 'ଓପି'

## ଅଧ୍ୟାପକ ଶାନ୍ତନୁ କୁମାର ଆଚାର୍ଯ୍ୟ

ପ୍ରେସିଡେଣ୍ଟ ରୁଜ୍‌ଭେଲ୍‌ଟଙ୍କ ସାଙ୍ଗରେ ପ୍ରାୟ ପ୍ରତି ସପ୍ତାହରେ ମୋର ଗୁପ୍ତ ଆଲୋଚନା ହେଉଥାଏ । ମତେ ଦେଖିଲାକ୍ଷଣି ସେ ପଚାରୁଥାନ୍ତି—

"ଓପି ! ତମ ସ୍ୱାସ୍ଥ୍ୟ ଭାରି ଖରାପ ହୋଇଗଲାଣି ! ତମେ କ'ଣ ଶୋଉନ ଆଦୌ ? ସେମିତି ଦିଶୁଚ ଯେ ! ଆଚ୍ଛା, ସେ କାମ କେତେ ଦୂର ଆଗେଇଲା, ଓପି !"

ମୋ ମୁଣ୍ଡ ତଳକୁ ନଇଁ ପଡୁଥାଏ । କଅଣ କହିବି ? ପରମାଣୁ ବୋମା ତିଆରି, ଘରବାଡ଼ି ତିଆରି କାମ ହୋଇଚି ଯେ ପ୍ରତି ହପ୍ତାକୁ ହପ୍ତା ଉଚ୍ଚକୁ ଉଚ୍ଚ ଉଠୁଚି କି ନାହିଁ ଆଖିରେ ଦେଖି ହବ ? ମୁଁ ତ ଲାଗିଥାଏ ପ୍ରାଣପଣେ । ରାତିରେ ମୋଟେ ଚାରି ଘଣ୍ଟା ଶୋଇବାକୁ ସମୟ ପାଉଥାଏ । ଛଅ ଫୁଟ ଉଚ୍ଚର ମଣିଷଟିଏ ମୁଁ । ମୋ ଦେହରେ ଯାହା ମାଉଁସ ଥିଲା ଏତେବେଳକୁ ସବୁ ଝଡ଼ିଝାଡ଼ି ମାତ୍ର ୧୩୦ ପାଉଣ୍ଡ ଓଜନ ଥାଏ ସେଥିରେ । ମୋ ପିନ୍ଧା କୋଟ ଖଣ୍ଡିକ ବାହୁଡ଼ିରୁ ଢେଣା ଭଳି ଝୁଲି ପଡ଼ୁଥାଏ ହାତରୁ, କାନ୍ଧରୁ । ତଥାପି ସେଇଥିରେ ମୁଁ ଧପାଉଥାଏ ଏଠୁ ସେଠିକି, ସେଠୁ ଏଠିକି ।

ନିତି ଅଫିସ୍ କାମ ବାହାରେ ଶହ ଶହ ଲୋକଙ୍କୁ ଦେଖା କରି, ବୈଜ୍ଞାନିକମାନଙ୍କୁ ପରାମର୍ଶ ଦେଇ, ଉତ୍ସାହ ଦେଇ, ଏଇ କାମ କରିବାରେ ଲାଗି ପଡୁଥାଏ ମୁଁ । ସମସ୍ତଙ୍କୁ ତ ମୁଁ ଉତ୍ସାହ ଦେଉଥାଏ । କିନ୍ତୁ ମତେ କିଏ ଭଲା ଉତ୍ସାହ ଦେବ ? ତଥାପି ଟିକିଏ ନିରୋଳା ବେଳ ପାଇଲେ ମୁଁ ଗୋଟିଏ କାମ କରୁଥାଏ । ସାହିତ୍ୟ, ସଙ୍ଗୀତ ଓ ଚିତ୍ର

ଆଙ୍କିବାରେ ମୋର ସେତିକି ସମୟ କଟୁଥାଏ । ପିଲାଦିନୁ ଏଇ ଅଭ୍ୟାସଟିକୁ ମୁଁ ବଞ୍ଚେଇ ଥାଏ । ଏଇ ଅଭ୍ୟାସ ମତେ ବି ବଞ୍ଚେଇଥାଏ ।

ସେଦିନ ପ୍ରେସିଡେଣ୍ଟ୍ ରୁଜ୍‌ଭେଲ୍ଟଙ୍କ ସାଥିରେ ଦେଖା କରିବା ମାତ୍ରେ ସେ ମୋତେ ମୋସ୍ୱାସ୍ଥ୍ୟ କଥା ନ ପଚାରି ଗୋଟିଏ ଅଦ୍ଭୁତ ପ୍ରଶ୍ନ ପଚାରି ଚମକେଇଦେଲେ—

"ଓପି !' 'ବ୍ୟଗ୍ର କଣ୍ଠରେ କହିଲେ ସେ । "ଜର୍ମାନୀର ଜଣେ ମହିଳା ବୈଜ୍ଞାନିକ—ତାଙ୍କ ନା ଲିସ୍ ମିଟ୍‌ନର"—

'ହଁ, କଅଣ ହେଲା !' ମୁଁ ଆହୁରି ବ୍ୟଗ୍ର କଣ୍ଠରେ ପଚାରୁ ପଚାରୁ ପ୍ରେସିଡେଣ୍ଟ୍‌ଙ୍କ ଆଡ଼କୁ ଝୁଙ୍କି ପଡ଼ିଲି ।

"ସେ ଜର୍ମାନୀରୁ ପଳେଇ ଆସିଛନ୍ତି !" ପୂର୍ବପରି କହୁଥାନ୍ତି ସେ ।

"କଅଣ କହିଲେ ? ମିଟ୍‌ନର ? ଗୁପ୍ତ ପରମାଣୁ ତଥ୍ୟର ମାଲିକାଣି 'ମିଟ୍‌ନର' ? 'ପଳେଇ ଆସୁଛନ୍ତି ? ଜର୍ମାନୀରୁ ?' ସେତିକିରେ ମୋ ତଣ୍ଟି ଶୁଖିଗଲା । ପାଟି ଶନ୍ଦ ବାଜିଗଲା ।

"ହଁ !" ପ୍ରେସିଡେଣ୍ଟ୍ ତାଙ୍କ ପକେଟ୍‌ରୁ ରୁମାଲ୍ କାଢ଼ି ମୁହଁ ପୋଛି ବସିଲେ । ଟିକିଏ ଦମ୍ ନେଲେ । ସତେକି ଭାରି ହାଲିଆ ହୋଇପଡ଼ିଥାନ୍ତି ସେ । ସେଇଭଳି ନିଶ୍ୱାସ ନେଇ କହିଲେ—

"ଭଗବାନଙ୍କର କି ମାୟା କେଜାଣି, ଓପି ! କେବଳ ମିଟ୍‌ନର ନୁହନ୍ତି, ହିଟ୍‌ଲର୍ ଓ ମୁସୋଲିନୀ ଭୟରେ ଆହୁରି କେତେ ଜଣ ବଡ଼ ବୈଜ୍ଞାନିକ ଶତ୍ରୁ ଦେଶରୁ ଲୁଚି ପଳେଇ ଆସିଲେଣି ।" ତାପରେ ସେ ଆଉ କେତୋଟି ନା କହିଲ—'ଓଟୋ ଫ୍ରିସ୍, ଏନ୍‌ରିକୋ ଫର୍ମି, ନିଲ୍‌ସ୍ ବୋର୍ ......... ।'

ମୋ କାନ ଠାବଦା ହୋଇଗଲା । ସେ ଯୋଉ ନାଁ ସବୁ ମୁଁ ଶୁଣିଥିଲି, ସେତେବେଳେ ସେମାନେ ସମସ୍ତେ ପରମାଣୁ ତଥ୍ୟର ଜଣେ ଜଣେ ଗୁରୁ । ଏ ଗୁରୁମାନେ ହିଟଲର, ମୁସୋଲିନୀଙ୍କୁ ଛାଡ଼ି ଚାଲି ଆସିବେ ଆମ ଦେଶକୁ, କିଏ ବିଶ୍ୱାସ କରନ୍ତା ସେ ଭଳି ଯୁଦ୍ଧ ସମୟରେ !

କିନ୍ତୁ ସେଇ ଥିଲା ଭଗବାନଙ୍କ ବରାଦ୍ ! ଅତ୍ୟାଚାରୀ ଏକଛତ୍ର-ବାଘ ହିଟଲର୍‌ର ମରଣବେଳ ସେଇଠୁ ଆରମ୍ଭ ହୋଇଗଲା । ଗଣ-ତନ୍ତ୍ରରେ ସ୍ୱାଧୀନ ମଣିଷର ବଜ୍ରମୂର୍ତ୍ତି ପୁଣି ଯେଉଁଠୁ ଦେଖାଦେଲା ।

ଏତେ ଏତେ ବଡ଼ ବୈଜ୍ଞାନିକମାନେ ଯୁଦ୍ଧବେଳେ ନିଜ ଦେଶ ଛାଡ଼ି ଅନ୍ୟ ଶତ୍ରୁ ଦେଶକୁ ପଳାଇ ଆସିଲେ କାହିଁକି ? ସେମାନେ କ'ଣ ହୀନ ଦେଶଦ୍ରୋହୀ ? ମୋ ମନରେ ତଥାପି ଗୋଟିଏ ସନ୍ଦେହ ଉଙ୍କି ମାରୁଥାଏ । କିନ୍ତୁ ସବୁ କଥା ଶୀଘ୍ର ଜଣାପଡ଼ିଗଲା ।

ଜର୍ମାନୀ ଓ ଇଟାଲୀର ପଳାତକ ପରମାଣୁ ବୈଜ୍ଞାନିକମାନେ ଇତିମଧ୍ୟରେ ଆସି ପହଞ୍ଚିସାରିଥାନ୍ତି ଆମ ଦେଶରେ । ସେମାନେ ଆଜ୍ଞା କରନ୍ତେ କ'ଣ ? ଦିନେ ପ୍ରେସିଡେଣ୍ଟ୍‌ଙ୍କଠାରୁ ଚିଠିଟିଏ ପାଇଲି । ଲେଖା ଥିଲା—"ଓପି ! ମିଟ୍‌ନର୍, ଫର୍ମି, ଫ୍ରିସ୍ ପ୍ରଭୃତି ତମର ଅଧୀନରେ କାମ କରିବେ ।" ତା ସାଥିରେ ଆଉ ପଦେ ଲେଖାଥିଲା—"ଦେଖ ! ଏ ସବୁ କିଛି ନୁହେଁ, ଆମ ଯୋଜନା ଯଦି ନ ଆଗାଏ ତେବେ କଥା ସରିଯିବ !"

ସେଇଥିରୁ ବୁଝିନେଲି ମୁଁ ସବୁ କଥା । ହିଟ୍‌ଲର୍ ତା ଦେଶରୁ କେତେ ଜଣ ବୈଜ୍ଞାନିକଙ୍କୁ ହରେଇଚି ବୋଲି ପରମାଣୁ ବୋମା କଥା ଭୁଲିଯାଇ ନାହିଁ; ପ୍ରତିଯୋଗିତା ସରିନାହିଁ ।

ପଳାତକ ବୈଜ୍ଞାନିକମାନଙ୍କ ସାଥିରେ ସେଦିନ ସ୍ୱହାର୍ଦ୍ଦକରେ ମୋର ଦେଖାହେଲା । ଯାହା ଶୁଣିଲି, କଲିଜା ପାଣି ହୋଇଗଲା ।

"ହେ ଭଗବାନ !" ମୋ ଦେହ ଶୀତେଇ ଉଠିଲା । ଦାନ୍ତରେ ଦାନ୍ତ ବାଜି ଯାଉଥାଏ । ଡୋକେ ଗରମ ବ୍ରାଣ୍ଡି ଶୀଘ୍ର ଢୋକ ଦେଇ କହିଲି—"ହିଟ୍‌ଲର୍ କ'ଣ ଏ ଯୁଗର କଂସାସୁର ! ନିଜ ଦେଶର ଲକ୍ଷ ଲକ୍ଷ ଜୀଅନ୍ତା ମଣିଷଙ୍କୁ ପୋଡ଼ି ଦଉଚି, ପୋତି ପକଉଚି, ବିଷାକ୍ତ ଗ୍ୟାସ୍ ଶୁଙ୍ଘେଇ ମାରି ଦଉଚି ! ଏ କଥା ସତ ?"

ମାଡ଼ାମ୍ ମିଟ୍‌ନର୍ ଛୋଟ ପିଲାଙ୍କ ଭଳି କଇଁ କଇଁ ହୋଇ କାନ୍ଦି ଉଠିଲେ । ଫର୍ମି ରାଗରେ ନିଜ କୋଟ୍‌ଟିକୁ ଏତେ ଜୋର୍‌ରେ

ଟାଣିଦେଲେ ଯେ ଗୋଟିଏ ବୋମାର ଠିକ କରି ଛୁଣ୍ଡି ଥୋଡ଼ାଏ ଦୂରରେ ଯାଇ ପଡ଼ିଲା । ଅଟୋ ଫ୍ରିସ୍ ତଳକୁ ମୁହଁ କରି ବସି ରହିଲେ ।

ସେମାନେ ସମସ୍ତେ ଥିଲେ ଗୋଟିଏ ଜାତିର ଲୋକ ଯାହାଙ୍କ ଉପରେ କୋପଦୃଷ୍ଟି ପଡ଼ିଥିଲା ହିଟ୍ଲର୍‌ର । ସେ ଜାତିର ନାଁ ଇହୁଦୀ ବା ଜିଉ । ପୃଥିବୀର ଅଧିକାଂଶ ବଡ଼ ବୈଜ୍ଞାନିକ ଏହି ଜାତିର । ଅତି ଧନୀ, ଅତି ବୁଦ୍ଧିମାନ ଲୋକ ହିସାବରେ ଇହୁଦୀମାନେ ଜଣା ହୁଅନ୍ତି । ସେତେବେଳେ ଇହୁଦିମାନଙ୍କର ନିଜର ବୋଲି କୌଣସି ଦେଶ ନ ଥିଲା । ସେମାନେ ସାରା ପୃଥିବୀରେ ବିଭିନ୍ନ ଦେଶରେ ବସ ବାସ କରି ରହୁଥାନ୍ତି । ଆମ ବାଇବେଲ୍ କହେ ଇହୁଦୀମାନଙ୍କର ନିଜ ଜନ୍ମଭୂମିର ନାଁ ଇସ୍ରାଏଲ୍ । ପ୍ରଭୁ ଯୀଶୁଖ୍ରୀଷ୍ଟ ନିଜେ ଇହୁଦୀ ଜାତିର ଲୋକ ।

ସେତେବେଳେ ଜର୍ମାନୀରେ ବହୁତ ଇହୁଦୀ ରହୁଥିଲେ । ସେମାନେ ଭାରି ବ୍ୟବସାୟୀ ଲୋକ ବି । ଖୁବ୍ ଧନୀ । ହିଟ୍ଲର୍ ଇହୁଦୀମାନଙ୍କ ଉପରେ ଖାର ଚଡ଼ୁଥାଏ । କାରଣ ତା ମତରେ ଇହୁଦୀମାନେ ଜର୍ମାନ୍ ଜାତିର ଲୋକଙ୍କୁ ବ୍ୟବସାୟରେ ଠକାକାଟି ଧନୀ ହୋଇଯାଇଥାନ୍ତି । ତା' ଛଡ଼ା ଇହୁଦୀମାନେ ଜର୍ମାନୀର ମୂଳ ଲୋକ ନୁହନ୍ତି । ହିଟ୍ଲର ମତରେ ଜର୍ମାନୀ ଦେଶର ମୂଳ ଲୋକେ ହି ମଣିଷଙ୍କ ଭିତରେ ଶ୍ରେଷ୍ଠ ମାନବ । ତେଣୁ ଶ୍ରେଷ୍ଠ ଲୋକଙ୍କ ଭିତରେ ବିଦେଶୀ ଇହୁଦୀମାନେ କେମିତି ରହନ୍ତେ ସେଠି । ଏଇ କାରଣରୁ ହିଟ୍ଲର୍ ଚାହୁଁଥାଏ କେମିତି ସେ ଇହୁଦୀମାନଙ୍କୁ ତାଙ୍କ ଦେଶରୁ ତଡ଼ି ଦେବ ।

ଏଇଥି ପାଇଁ ହିଟ୍ଲର ଆରମ୍ଭ କରିଥିଲା ଗୋଟାଏ ଯୋଜନା । ସେ ଯୋଜନା ଏତେ ହୀନ ଯେ ପରମାଣୁ ବୋମାଠୁ ବେଶୀ ନୃଶଂସ ହୋଇଗଲା ତା ଫଳ :

ସେତେବେଳକୁ ପ୍ରାୟ ଛ ଲକ୍ଷ ଇହୁଦୀଙ୍କୁ ହିଟ୍ଲର ମାରି ସାରିଥାଏ । ତାର ଇଚ୍ଛା ଥିଲା, ପୃଥିବୀରୁ ଇହୁଦୀ ଜାତିକୁ ମୂଳପୋଛ କରିଦେବା । ସେଇ ଲକ୍ଷ୍ୟରେ ସେ ଆଗ ନିଜ ଦେଶରେ ଆରମ୍ଭ କରିଥାଏ ତାର ଇହୁଦୀମାରଣ ଯଜ୍ଞ । ଓହୋ, କି କରୁଣ ସେ ଘଟଣାମାନ ! କୁନି କୁନି ପିଲାଙ୍କୁ ବି ବନ୍ଧୁକରୁ କରି ଗୁଳି ମାରି ହଆଯାଉ-

ଥାଏ । ବଡ଼ ବଡ଼ ଗାତ ଖୋଳି ହଜାର ହଜାର ଜୀଅନ୍ତା ଲୋକଙ୍କୁ ତା ଭିତରେ ପକେଇ ପୋତି ଦିଆହେଉଥାଏ । ବଡ଼ ବଡ଼ ଘର ଭିତରେ ହଜାର ହଜାର ଲୋକଙ୍କୁ ଖୁନ୍ଦିଦେଇ କବାଟ ଝରକା ବନ୍ଦକରି ଦେଇ ଘର ଭିତରକୁ ବିଷାକ୍ତ ଗ୍ୟାସ ଛାଡ଼ି ଦିଆଯାଉଥାଏ । ଲୋକେ ଛଟପଟ ହୋଇ ମାଟି କରୁ କରୁ ବିଷାକ୍ତ ଗ୍ୟାସ ଶୁଙ୍ଘି ଶୋଇପଡ଼ୁଥାନ୍ତି ଚିର ନିଦ୍ରାରେ । ଅହୁରି ଅନେକ ଜଘନ୍ୟ ବ୍ୟବସ୍ଥାରେ ମରାଯାଉଥାଏ ଇହୁଦୀ ମାନଙ୍କୁ । ସେସବୁତକ କାନ ଶୁଣିବ ନାହିଁ—

ଏଣେ ଯୁଦ୍ଧରେ ଲୋକେ ମରୁଥାନ୍ତି ନିତି ହଜାର ହଜାର । ତେଣେ ହିଟ୍‌ଲର୍‌ର ଇହୁଦୀମାରଣ-ଯଜ୍ଞରେ ନିତି ମରୁଥାନ୍ତି ହଜାର ହଜାର ଇହୁଦୀ । ଧରଣୀ ତ୍ରାହି ତ୍ରାହି ଡାକ ଛାଡ଼ୁଥାଏ । କିନ୍ତୁ କିଏ ବା ବନ୍ଦ କରନ୍ତା ସେ ଅସୁରର ଲୀଳା ? ମିତ୍ରପକ୍ଷ ତ ହାରୁଥାନ୍ତି । ଅସୁର ତ ଜିତୁଥାଏ । ସେଦିନ ପୃଥିବୀଯାକର ଲୋକେ ହାହାକାର କରୁଥାନ୍ତି । ଶତ୍ରୁ ମିତ୍ର ଉଭୟ ପକ୍ଷର ସାଧାରଣ ଲୋକେ ଚର୍ଚ୍ଚରେ, ମନ୍ଦିରରେ, ମସ୍‌ଜିଦ୍‌ରେ ନିତି ପ୍ରାର୍ଥନା କରୁଥାନ୍ତି ଭଗବାନଙ୍କୁ । ଡାକୁଥାନ୍ତି ସେମାନେ—"ହେ ଭଗବାନ ! ସ୍ୱର୍ଗରୁ ଓହ୍ଲାଇ ଆସ । ନ ହେଲେ ଏ ମର୍ତ୍ତ୍ୟପୁରୀ ଆଉ ରହିବ ନାହିଁ । ସଂସାରରୁ ଧର୍ମ ଚାଲିଗଲା । ମଣିଷ ଦୈତ୍ୟ ହୋଇଗଲା !"

ଦିନ ପରେ ଦିନ ଲୋକଙ୍କର ଏଇ ପ୍ରାର୍ଥନା ଚାଲିଥାଏ । କିନ୍ତୁ କାହାନ୍ତି କେଉଁଠି ଥାନ୍ତି ଭଗବାନ ?

ସେତେବେଳକୁ ଆଠ ବର୍ଷ ଧରି ଯୁଦ୍ଧରେ ନରମେଧ ଚାଲିଲାଣି । ଭଗବାନ ତଥାପି ଶୁଣୁ ନ ଥାନ୍ତି । ୧୯୪୫ ଜୁଲାଇ ଆଉ କେଇ ମାସ ଥାଏ ଆଗକୁ । ହଠାତ୍ ସେଦିନ ରାତିରେ ମୁଁ ଗୋଟିଏ ଅଦ୍ଭୁତ ସ୍ୱପ୍ନ ଦେଖିଲି । ଅନେକ ବର୍ଷ ହେବ ସ୍ୱପ୍ନ କେମିତିକଆ ଜିନିଷ ମୋ ଆଖି ଦେଖି ନଥାଏ ।

—ରାତି ପାହାନ୍ତିଆ ପ୍ରହର । ଖୁବ୍ ନିଦ ଜମି ଯାଇଥାଏ ଆଖିରେ । ହଠାତ୍ ସ୍ୱପ୍ନରେ ମୁଁ ଦେଖିଲି— ଆକାଶ ଆଲୋକମୟ ହୋଇଗଲା । ଶହ ଶହ ସୂର୍ଯ୍ୟଠୁ ବଳି ଉଜ୍ଜ୍ୱଳ ସେ ଆଲୋକରେ ମୋ ଆଖି ପ୍ରାୟ ଅନ୍ଧ ହୋଇଗଲା । ତଥାପି ମନେ ଲାଗିଲା, ନାନା ରଙ୍ଗର

ଖେଳ ଯେମିତିକି ଆରମ୍ଭ ହୋଇଗଲା ସେ ଅଲୋକ ଭିତରେ । ମୁଁ ନଟେଇ କରି ଗୁଣିଁଥାଏ ସେ ଆଲୋକର ଗତିବିଧିକୁ । କିଛିଏ ସମୟ ପରେ ମତେ ଜଣାଗଲା, ଯେମିତିକି ସେ ଆଲୁଅ ଆକାଶରୁ ଜୋର୍ ରେ ଖସିଆସିଲା ଭୂଇଁ ଉପରକୁ । ମୁଁ ସାଙ୍ଗେ ସାଙ୍ଗେ ଦଉଡ଼ିଗଲି ସେଇଠିକି । କିନ୍ତୁ ମୁଁ ଯେତେ ଯେତେ ଆଗକୁ ଦଉଡୁଥାଏ, ସେ ଆଲୁଅ ସେତିକି ସେତିକି ଦୂରକୁ ପଳାଉଥାଏ । ସବାଶେଷରେ ଆଲୁଅକୁ ଧରି ନ ପାରି ମୁଁ ଅଟକିଗଲି । ଭୂଇଁ ଉପରେ ଆଣ୍ଠୁମାଡ଼ି ବସିପଡ଼ି ପ୍ରାର୍ଥନା କଲି—"ହେ ଆଲୋକମୟ ଶକ୍ତି ! ତୁମେ ଯେ ପାରି ସେ ହୁଅ ପଛକେ, ମତେ ଧରାଦିଅ । ମୁଁ ଜାଣିବାକୁ ଚାହୁଁଛି ତୁମେ କିଏ ? ଏତେ ଶକ୍ତିର ଅଧିକାରୀ ତୁମେ ହେଲ କେମିତି ? ମତେ ଦୟାକରି କୁହ !

ମୋର ଅନବରତ ପ୍ରାର୍ଥନାରେ ଖୁସି ହେଲା ସେ ଆଲୋକ । ଠାଏ ଅଟକିଗଲା । ଧୀରେ ଧୀରେ ସେ ତା'ର ତେଜ କମେଇଦେଲା । ତା ତେଜ ଯଥେଷ୍ଟ ମଉଳି ଯିବାରୁ ମୁଁ ତା ପାଖକୁ ଯିବାକୁ ସାହସ କଲି । ପାଖକୁ ଯାଇ ଯାହା ମୁଁ ଦେଖିଲି ଆଉ ଶୁଣିଲି, ମୋ ପ୍ରାଣ ଆନନ୍ଦରେ ନାଚି ଉଠିଲା । ଗୋଟିଏ ହାଣ୍ଡି ଆକୃତିର କିଛି ଜିନିଷ, ସେଇଟା ନିଜ ମେକ୍ସିକୋ ମରୁଭୂମିର ବାଲିରେ ଥୁଆ ହୋଇଥାଏ । ମୁଁ ତା ପାଖକୁ ଯିବାମାତ୍ରେ ତା ଭିତରୁ ସ୍ୱର ଶୁଭିଗଲା—

"ହୁଁ ନା ! ଯୋଉ ଶକ୍ତିକୁ ଖୋଜୁଥିଲୁ, ସେଇ ମୁଁ । ଭଗବାନ ପଠେଇଲେ ମତେ ତୋ ପାଖକୁ । ଏବେ ମୁଁ ତୋର କି ଉପକାର କରିବି କହ ।"

"ଆଗେ ଯୁଦ୍ଧ ବନ୍ଦ କର ।" ମୁଁ ବିନୀତ ହୋଇ ନମସ୍କାର କରୁ କରୁ କହିଲି, ସେ ମହାଶକ୍ତିକୁ ।

"ତଥାସ୍ତୁ ! (ସେଇଆ ହେଉ)" ଗୋଟିଏ ଗିଁ ଗିଁ ଶବ୍ଦ ବାହାରିଲା ସେ ହାଣ୍ଡି ଭିତରୁ ।

ତା'ର ସେଭଳି ଶବ୍ଦ ଶୁଣି ମୁଁ ଚମକି ପଡ଼ିଲି । କାଳେ ମୋ ପ୍ରାର୍ଥନା ଶୁଣି ମହାଶକ୍ତିକୁ କଷ୍ଟହେଲା ଭାବି ଆଉ ଥରେ ପ୍ରାର୍ଥନା କରି

କହିଲ—"ଯୁଦ୍ଧକୁ ସବୁଦିନ ପାଇଁ ବନ୍ଦ କରିଦିଅ । ଯେମିତିକ ମଣିଷ ମଣିଷକୁ ମାରିବା ପାଇଁ କୌଶଳ କରିବ ନାହିଁ ହିଟଲର୍‌ ଭଳି ।"

ଏଥର ଗୋଟିଏ ପ୍ରକାର ଅଦ୍ଭୁତ ହସ ବାହାରିଲା ସେ ହଣ୍ଡା ଭିତରୁ ।

"ହସୁଚ କାହିଁକି ମହାଶକ୍ତି ?" ପଚାରିଲି ମୁଁ । କେତେବେଳ ପରେ ହଣ୍ଡା ଭିତରୁ ହସ ବନ୍ଦ ହେଲା । ଏଥର ଗୋଟିଏ କୁନି ପିଲାର ସ୍ୱରଟିଏ ସତେକି ବାହାରିଲା ସେ ହଣ୍ଡା ଭିତରୁ, ଉତ୍ତର ଦେଲା ସେ—

"ଓପି ! ତୁ ଯାହା ଯାହା କହୁଚୁ ସତହେବ । ହେଲେ ଚିରଦିନ ପାଇଁ ଯୁଦ୍ଧକୁ ବନ୍ଦ କରିବା ଭାରି କଷ୍ଟ । ଯଦି ସେ କଥା ବୁଝୁ, ତେବେ କହ—ତୁମ ବୈଜ୍ଞାନିକମାନେ ମତେ ଯୁଦ୍ଧରେ ନ ଲଗେଇ ସଂସାରକୁ ଶାନ୍ତି ଆଣିବା କାମ ଦେବେ ମତେ ?"

ମୁଁ ଚମକି ପଡ଼ିଲି । କ'ଣ ହେଲା ? ମୋର ବିଶ୍ୱାସ ହେଲା ନାହିଁ ମହାଶକ୍ତି କଥାରେ । ମନେ ମନେ ଭାବିଲି ମୁଁ— 'ଯୋଉ ମହାଶକ୍ତି ପୃଥିବୀକୁ ଜାଳିଦେଇ ପାରିବ, ସେଥିରୁ ପୁଣି ଶାନ୍ତି ବାହାରିବ ?"

ଗୁଙ୍ଗୁରିକନା ମୋ ନିଦ ଭାଙ୍ଗିଗଲା । ଦିହଟା ଝାଳରେ ଜୁଡ଼ା ହୋଇଯାଇଥାଏ । ଆଖି ପିଟେଇ ଚାରିଆଡ଼କୁ ଚାହିଁଲି । କେହି କୁଆଡ଼େ ନାହିଁ । ତେବେ ଯାହାସବୁ ଦେଖିଲି ଶୁଣିଲି ସବୁ କଣ ମିଛ ? ଖାଲି ସ୍ୱପ୍ନ !

ମିଛ ନୁହେଁ କି ସ୍ୱପ୍ନ ନୁହେଁ । ଦିନ କେଇଟାରେ ମହାଶକ୍ତିର କଥା ଅକ୍ଷରେ ଅକ୍ଷରେ ଫଳିଗଲା । ହିଟଲରର ବୈଜ୍ଞାନିକମାନେ ପରମାଣୁବୋମା ଉଦ୍‌ଭାବନ କରିବା ପୂର୍ବରୁ ପ୍ରଥମେ ଆମେ ପୃଥିବୀକୁ ମହାଶକ୍ତିର କରାମତି ଦେଖେଇ ଦେଲୁ ।

୧୯୪୫ ଜୁଲାଇ ଷୋଳ ତାରିଖ ଦିନ, "ଜର୍ନେଡ଼ୋଲ" ଉପରେ ଯୋଉ ପରମାଣୁ ବୋମା ଫୁଟିଲା ସେ ଥିଲା ପୃଥିବୀର ପ୍ରଥମ ପରମାଣୁ

ବୋମା । ସେ ଖବର ଦୁନିଆ ଜାଣିବା ମାତ୍ରେ ଶତ୍ରୁପକ୍ଷରେ ହାଲେଣି ପଡ଼ିଗଲା ।

ପ୍ରତିଯୋଗିତାରେ ଆମର ଜୟ ହେଲା । ଏକଛତ୍ରବାଦର ପରାଜୟ ହେଲା । ଗଣତନ୍ତ୍ରର ଜୟ ହେଲା ।

ପରମାଣୁ ବୋମାର ଉଦ୍ଭାବକ ବୋଲି ଜଗତରେ ମୋ ନାଁ ଡାକ ହୋଇଗଲା । କିନ୍ତୁ ମୋ ସାଙ୍ଗ ବୈଜ୍ଞାନିକ କେତେ ଜଣ ରାଗରେ ମତେ ଗାଳି ଦେଲେ । କହିଲେ—"କିଆଁ ଲଗା ଓଁପି ! ପୃଥିବୀକୁ ଜାଳି ଦେବାକୁ ଅସ୍ତ୍ରଟିଏ ରଖି ଦେଇଗଲ ।"

ବନ୍ଧୁମାନଙ୍କର ଏ ଗାଳି ମତେ ପ୍ରକୃତରେ ଭାରି ବାଧିଲା । ମୋ ବିବେକ ବି ସବୁବେଳେ ମତେ ଝୁଣ୍ଟମୁଣ୍ଟ କରି କାମୁଡ଼ିଲା । ସତରେ କିଅଣ ମୁଁ ଏ ସୁନାର ପୃଥିବୀକୁ ଧ୍ୱଂସ କରିଦେବାର ସୂତ୍ରଟିଏ ମଣିଷକୁ ବତେଇବା ପାଇଁ ଜନ୍ମ ହୋଇଥିଲି ? ସବୁବେଳେ ଏଇଆ ଭାବିଲି ମୁଁ ।

ମୋର ସୁନାମ ବଢ଼ି ଚାଲିଥାଏ । ପ୍ରାୟ ୧୮ ବର୍ଷ ପରେ 'ପ୍ରେସିଡେଣ୍ଟ୍ କେନେଡି' ମତେ ଗୋଟିଏ ବଡ଼ ପୁରସ୍କାର ଦେଲେ । ସେ ପୁରସ୍କାରର ନାଁ "ଫର୍ମି ପୁରସ୍କାର" । ତା' ମୂଲ୍ୟ ପଚାଶ ହଜାର ଡଲାର ।

ତମର ମନେ ଥିବ ଇଟାଲିରୁ ତଡ଼ାଖାଇ ଇହୁଦୀ ବୈଜ୍ଞାନିକ ଫର୍ମି ପଳେଇ ଆସିଥିଲେ । ସେ ମୋ ଅଧୀନରେ କାମ କରୁଥିଲେ । ସେ ଏତେ ବଡ଼ ବୈଜ୍ଞାନିକ ଯେ ତାଙ୍କ ନାଁରେ ଆମ ଦେଶରେ ବଡ଼ ବଡ଼ ବୈଜ୍ଞାନିକମାନଙ୍କୁ ଗୋଟିଏ ପୁରସ୍କାର ଦିଆଗଲା । ମୁଁ ସେଇ ଫର୍ମି ପୁରସ୍କାର ପାଇଥିଲି ।

ହଁ ଶେଷ କଥାଟି କହିଦିଏ ଏଥର । ସେଦିନ ଯେଉଁ ସ୍ୱପ୍ନ ମୁଁ ଦେଖିଥିଲି, ତା'ର ଶେଷ ଫଳ ଏଯାଏଁ ଫଳି ନାହିଁ । ପୃଥିବୀରୁ ଯୁଦ୍ଧ ସବୁଦିନ ପାଇଁ ସରି ଯାଇନାହିଁ, କିନ୍ତୁ ସେଦିନୁ ଆଜିଯାଏ ପରମାଣୁ ଶକ୍ତିର ଯେଉଁ ଶାନ୍ତିପୂର୍ଣ୍ଣ ପ୍ରୟୋଗ ବୈଜ୍ଞାନିକମାନେ କ[illegible]ନ୍ତି, ସେସବୁ ଦେଖି ମୋର ବହୁତ ଆଶା ଜାଗି ଯାଇଛି, ଆଉ ସ୍ୱର୍ଗ[illegible]ରେ ବସି ମୁଁ ଭାବୁଛି ଯେ ମୋ ସ୍ୱପ୍ନ ସଂପୂର୍ଣ୍ଣ ସଫଳ ହେବ ହିଁ [illegible] !

—*—

# ଚ୍ୟବନ ଓ ସୁକନ୍ୟା

## ଶ୍ରୀମତୀ ଜୟନ୍ତୀ ପଟ୍ଟନାୟକ

ବାର୍ଦ୍ଧକ୍ୟରେ ଯୌବନ ଫେରି ପାଇବା ପ୍ରାଚୀନ କାଳରୁ ଏ ପର୍ଯ୍ୟନ୍ତ ମାନବଜାତି ପକ୍ଷରେ ଏକ ପ୍ରଶ୍ନବାଚକ ହୋଇ ଆସିଛି । ମହାଭାରତର ଚ୍ୟବନ-ସୁକନ୍ୟା ଗଳ୍ପ ଏହାର ଏକ ସୁନ୍ଦର ଦୃଷ୍ଟାନ୍ତ । ଏଥିରେ ପାତିବ୍ରତ୍ୟ ଇତ୍ୟାକାର ଆଦି ଗୁଣାବଳୀ ସଂଗେ ସଂଗେ ସାଧାରଣ ମାନବର ଦୋଷ, ଦୁର୍ବଳତା ମଧ୍ୟ ପ୍ରକଟିତ ହୋଇଛି ।

ବିଦର୍ଭ ରାଜ୍ୟର ପୟୋଷ୍ଣୀ ନଦୀ କୂଳରେ ଭୃଗୁନନ୍ଦନ ଚ୍ୟବନ ତପସ୍ୟା କରୁଥିଲେ । ବହୁକାଳ ଧରି ସେ ଏପରି କଠୋର ତପସ୍ୟା କଲେ ଯେ ତାଙ୍କ ଦେହ ସ୍ଥିରପଣେ ଏକ ଉଇହୁଙ୍କା ହୋଇଗଲା ଓ ତା' ଉପରେ ଲଟା ମାଡ଼ିଗଲା । ଚ୍ୟବନ ସେଥିପ୍ରତି ଭ୍ରୂକ୍ଷେପ ନକରି ତପସ୍ୟା କରିବାକୁ ଲାଗିଲେ । କେବଳ ଉଇ ହୁଙ୍କା ଦେହରେ ଦୁଇଟି କଣା ଥିଲା । ସେହି ବାଟେ ସେ ବାହାରକୁ ଦେଖି ପାରୁଥିଲେ ଓ ମୁକ୍ତ ବାୟୁକୁ ନିଃଶ୍ୱାସ ରୂପେ ଗ୍ରହଣ କରୁଥିଲେ ।

### ସୁକନ୍ୟାଙ୍କ ଚପଳତା

କେତେକାଳ ଗଡ଼ି ଯିବା ପରେ ଶର୍ଯ୍ୟାତି ନାମକ ଜଣେ ରାଜା ତାଙ୍କର ପାତ୍ର, ମନ୍ତ୍ରୀ, ସୈନ୍ୟ ସମଭିବ୍ୟାହାରରେ ନିକଟବର୍ତ୍ତୀ ଏକ ସୁରମ୍ୟ ସରୋବରରେ ବିହାର କରିବା ପାଇଁ ଆସିଲେ । ତାଙ୍କ ସହିତ ତାଙ୍କର ସ୍ତ୍ରୀମାନେ ଓ ଏକମାତ୍ର କନ୍ୟା ସୁକନ୍ୟା ଥିଲେ । ସୁକନ୍ୟା ଯେପରି ସୁନ୍ଦରୀ ସେହିପରି ଚପଳା ଓ ରହସ୍ୟ ପ୍ରିୟା ଥିଲେ । ସେଠାରେ ଫଳପୁଷ୍ପ ଯୁକ୍ତ ସୁନ୍ଦର ବୃକ୍ଷମାନଙ୍କୁ ଦେଖି ସେ ଏକାକୀ ବଣ ମଧ୍ୟରେ ବୁଲି ଫୁଲ ତୋଳିବାକୁ ଲାଗିଲେ । ଏପରି ଗୋଟିଏ ସୁନ୍ଦରୀ କନ୍ୟା କୌତୁକରେ ବନ ମଧ୍ୟରେ ଫୁଲ ତୋଳୁଥିବାର ଦେଖି ତପସ୍ୱୀ

ଚ୍ୟବନ ମଧ୍ୟ ମୁଗ୍ଧ ହୋଇଗଲେ ଓ ତାଙ୍କର ପତ୍ନୀତ୍ୱ ଲାଭ ପାଇଁ ସେ ତାଙ୍କୁ ଡାକିବାକୁ ଲାଗିଲେ । ଅନାହାର ଓ ବାର୍ଦ୍ଧକ୍ୟ ଯୋଗୁଁ ତାଙ୍କର ସ୍ୱର ଅତି କ୍ଷୀଣ ଥିଲା । ସୁକନ୍ୟା 'କିଏ କେଉଁଆଡ଼ୁ ତାଙ୍କୁ ଡାକୁଛି' ଜାଣି ପାରିଲେ ନାହିଁ ।

କେବଳ ସେ ଦେଖିଲେ ଗୋଟିଏ ଉଈହୁଙ୍କା ଭିତରେ ଯୋଡ଼ିଏ କ'ଣ ଜୁଳୁ ଜୁଳୁ ହୋଇ ଦେଖା ଯାଉଛି । କ୍ରୀଡ଼ାଶୀଳା ରାଜକୁମାରୀ କୌତୁହଳବଶତଃ ହାତରେ ଗୋଟିଏ କଣ୍ଟାଧରି ସେ ଦୁଇଟିକୁ ଫୋଡ଼ି ଦେଲେ । ଏହାପରେ ଚ୍ୟବନ ଋଷି ଅନ୍ଧ ହୋଇଗଲେ । ତାଙ୍କର କ୍ରୋଧର ସୀମା ରହିଲା ନାହିଁ । ସେ ଅଭିଶାପ ଦେଲେ ରାଜା ଓ ତାଙ୍କ ସହିତ ଯେଉଁମାନେ ଆସିଛନ୍ତି ସେମାନେ ରୋଗଗ୍ରସ୍ତ ହୋଇ ଅସହ୍ୟ ଯନ୍ତ୍ରଣା ଭୋଗ କରନ୍ତୁ । ସଂଗେ ସଂଗେ ଏହି ଅଭିଶାପ ଫଳିଲା ଏବଂ ରାଜା ଓ ତାଙ୍କ ସ୍ୱଜନ, ପତ୍ନୀଜନ, ସୈନ୍ୟ ସାମନ୍ତ ଅସହ୍ୟ ଯନ୍ତ୍ରଣା ଭୋଗ କରିବାକୁ ଲାଗିଲେ ।

ଏହାର କ'ଣ କାରଣ ହୋଇପାରେ ବୋଲି ଅନୁସନ୍ଧାନ କରି ରାଜା ବୁଝିଲେ ଯେ ତାଙ୍କର କନ୍ୟା ବାଲ୍ୟ-ସୁଲଭ ଚପଳତା ଯୋଗୁ ତପସ୍ୟାରତ ଚ୍ୟବନ ଋଷିଙ୍କର ଚକ୍ଷୁ ନଷ୍ଟ କରି ଦେଇଛନ୍ତି ।

ରାଜା ଉଈ ହୁଙ୍କା ମଧ୍ୟରେ ବସିଥିବା ଚ୍ୟବନ ଋଷିଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି କହିଲେ, "ମହର୍ଷି ମୋର କନ୍ୟା ବାଲ୍ୟ ଚପଳତା ଯୋଗୁଁ ଆପଣଙ୍କ ନିକଟରେ ଯେଉଁ ଅପରାଧ କରିଛି, ଆପଣ ତାହା ମାର୍ଜନା କରନ୍ତୁ" ।

## କନ୍ୟା ସଂପ୍ରଦାନ କର

ଚ୍ୟବନ କହିଲେ, "ହେ ରାଜା, ତୁମର ଏହି କନ୍ୟା ଯୌବନ ଓ ରୂପର ଗର୍ବରେ ଉନ୍ମତ୍ତ ହୋଇ ଜଣେ ନିରପରାଧ ତପସ୍ୱୀର ଚକ୍ଷୁକୁ ବିଦ୍ଧ କରିଛି । ତେଣୁ ତା'ର ଏହି ଗର୍ବର ଖଣ୍ଡନ ପାଇଁ ତୁମେ ତାକୁ ମୋତେ ସଂପ୍ରଦାନ କର । ତା'ହେଲେ ଯାଇ ମୁଁ ତୁମକୁ କ୍ଷମା ଦେବି" ।

ରାଜା ଅନନ୍ୟୋପାୟ ହୋଇ ନିଜର ଆଦରିଣୀ କନ୍ୟାଙ୍କୁ ଜରାଜୀର୍ଣ୍ଣ ଚ୍ୟବନଙ୍କ ହସ୍ତରେ ସମର୍ପଣ କଲେ । ସୁକନ୍ୟା ନିଜର ପିତା ଓ ରାଜ୍ୟର ମଙ୍ଗଳ ପାଇଁ ଶୁଦ୍ଧ ଚିତ୍ତରେ ନିଜର ଏହି ଅବସ୍ଥାକୁ ଗ୍ରହଣ କଲେ । ତିଳେ ମାତ୍ର ଅସନ୍ତୋଷ ବା ଆପତ୍ତି ପ୍ରକାଶ କଲେ ନାହିଁ । ସେ ନିଜର ସମସ୍ତ ମନ ପ୍ରାଣ ଦେଇ ପତିରୂପେ ପ୍ରାପ୍ତ ଏହି ଋଷିଙ୍କର ସେବା କରିବାକୁ ଲାଗିଲେ ।

କିଛି ଦିନ ଗତ ହେବାପରେ ସୁକନ୍ୟା ନିକଟବର୍ତ୍ତୀ ସୁନ୍ଦର ସରୋବରରେ ସ୍ନାନ କରିବାକୁ ଯାଇଥାନ୍ତି । ଦେବ ବୈଦ୍ୟ ଅଶ୍ୱିନୀ-କୁମାର ଦୁହେଁ ସ୍ନାନରତ ଏହି ରୂପସୀଙ୍କର ସୁଢୋଲ, ସୁଠାମ, ଅଙ୍ଗ-ପ୍ରତ୍ୟଙ୍ଗ ଓ ଲାବଣ୍ୟ ଦେଖି ଚକିତ ହୋଇଗଲେ ଓ ସେ କିଏ ତାହା ଜାଣିବା ପାଇଁ ଉତ୍ସୁକ ହୋଇ ତାଙ୍କ ଆଗରେ ଦେଖା ଦେଲେ ।

ଲଜ୍ଜାରେ ଅଧୋମୁଖୀ ହୋଇ ସୁକନ୍ୟା କହିଲେ, "ମୁଁ ଶର୍ଯ୍ୟାତି ରାଜାଙ୍କର କନ୍ୟା ଓ ଚ୍ୟବନ ଋଷିଙ୍କର ପତ୍ନୀ । ଏହିଠାରେ ମୋର ସ୍ୱାମୀଙ୍କର ଆଶ୍ରମ ।"

## ମରଣାପନ୍ନ ବ୍ୟକ୍ତି

ସେ ଚ୍ୟବନ ଋଷିଙ୍କର ପତ୍ନୀ ବୋଲି ଶୁଣି ଅଶ୍ୱିନୀ କୁମାର ହସି ହସି କହିଲେ, "ତୁମର ପିତା କେଉଁ କାରଣରୁ ତୁମପରି କନ୍ୟାଙ୍କୁ ଏପରି ଜଣେ ବୃଦ୍ଧ, ମରଣାପନ୍ନ ବ୍ୟକ୍ତିକୁ ବିବାହ ଦେଲେ ? ତୁମ ପରି ରୂପବତୀ ଆମେ ଦେବଲୋକରେ ମଧ୍ୟ ଦେଖି ନାହୁଁ । ତୁମେ ଯୌବନ ଓ ସୌନ୍ଦର୍ଯ୍ୟର ଅଧିକାରିଣୀ ହୋଇ କାହିଁକି ଏପରି ଜଣେ ବୃଦ୍ଧ, ଅସମର୍ଥ ଲୋକର ସେବା କରୁଛ ? ତୁମେ ତାଙ୍କୁ ପରିତ୍ୟାଗ କରି ଆମ ମଧ୍ୟରୁ ଜଣକୁ ଗ୍ରହଣ କର ।"

ସୁକନ୍ୟା ଉତ୍ତର ଦେଲେ, "ମରଣାପନ୍ନ ହୁଅନ୍ତୁ, ବୃଦ୍ଧ ବା ଅସମର୍ଥ ହୁଅନ୍ତୁ, ସେ ମୋର ସ୍ୱାମୀ । ଆପଣମାନେ ମୋର ସ୍ୱାମୀଙ୍କର ନିନ୍ଦା କରିବା ଅତିଶୟ ଅନୁଚିତ ଓ ଅସୁନ୍ଦର ।"

ଅଶ୍ୱିନୀ କୁମାର ଦୁହେଁ ସହଜରେ ଛାଡ଼ିବାର ପାତ୍ର ନୁହନ୍ତି । ସେମାନେ କହିଲେ, "କାନ୍ତିମତି ! ତୁମର ପ୍ରତିଭକ୍ତି ପ୍ରଶଂସନୀୟ ।

ଆମେ ଦେବ ବୈଦ୍ୟ । ଆମେ ଚାହିଁଲେ ତୁମର ପତିଙ୍କର ଯୌବନାବସ୍ଥା ଫେରାଇ ଆଣିବୁ ଓ ତାଙ୍କୁ ରୂପବାନ୍ କରିପାରିବୁ, କିନ୍ତୁ ଏହା ଗୋଟିଏ ସର୍ତ୍ତରେ ହେବ । ସେ ତାଙ୍କର ଯୌବନ ଫେରି ପାଇବା ପରେ ତୁମେ ଆଉ ପତ୍ନୀ ହୋଇ ନ ଥିବ । ତୁମେ ଆମ ତିନିଜଣଙ୍କ ମଧ୍ୟରୁ ପୁନର୍ବାର ଜଣଙ୍କୁ ସ୍ୱାମୀ ରୂପେ ନିର୍ବାଚିତ କରିବ । ତୁମେ ତୁମର ସ୍ୱାମୀଙ୍କ ସହିତ ପରାମର୍ଶ କରି ଶୀଘ୍ର ଆମକୁ ଜଣାଅ ।"

ଅଶ୍ୱିନୀ କୁମାର ଭାବିଲେ ଯେ ଯେଉଁମାନେ ରୂପ ଯୌବନ ଦାନ କରି ପାରନ୍ତି ସେମାନଙ୍କୁ ଛାଡ଼ି ସୁକନ୍ୟା କେବେହେଲେ ଚ୍ୟବନଙ୍କୁ ପୁଣି ବରଣ କରିବେ ନାହିଁ । କିନ୍ତୁ ସୁକନ୍ୟାଙ୍କର ପରିକଳ୍ପନା ଭିନ୍ନ ଥିଲା । ସେ ଚ୍ୟବନଙ୍କୁ ଏଥିରେ ରାଜି କରାଇଲେ । ବିଶେଷତଃ ରୂପ, ଯୌବନ ଲାଭର ଆଶା ଥିବା ଯୋଗୁଁ ବୃଦ୍ଧ ସହଜରେ ରାଜି ହୋଇଗଲେ ।

## ପ୍ରତ୍ୟାଗତ ଯୌବନ

ଅଶ୍ୱିନୀ କୁମାରଙ୍କ ଚିକିତ୍ସାରେ ଚ୍ୟବନଙ୍କ ଯୌବନ ଫେରି ଆସିଲା । ତାଙ୍କର ରୂପ ମଧ୍ୟ ବଦଳି ଗଲା ।

ଯେତେବେଳେ ତିନିଜଣଙ୍କ ମଧ୍ୟରୁ ଜଣଙ୍କୁ ପତି ରୂପେ ବରଣ କରିବାର ପ୍ରଶ୍ନ ଉଠିଲା, ସୁକନ୍ୟା ପୁନରାୟ ଚ୍ୟବନଙ୍କୁ ବରଣ କଲେ ।

ସୁକନ୍ୟା ପତିବ୍ରତାର ଧର୍ମ ପାଳନ କରି ଯଶସ୍ୱିନୀ ହେଲେ । କିନ୍ତୁ ଚ୍ୟବନ ? ଯେଉଁ ଅଶ୍ୱିନୀ କୁମାର ଦୁହିଁଙ୍କ ଯୋଗୁଁ ସେ ବୃଦ୍ଧାବସ୍ଥାରେ ତାଙ୍କର ଯୌବନ ଫେରି ପାଇଥିଲେ, ତାଙ୍କ ପ୍ରତି ଅକୃତଜ୍ଞ ହୋଇ ରହିବା ସେ ଉଚିତ ମନେ କଲେ ନାହିଁ । ଇନ୍ଦ୍ର ଓ ଅଶ୍ୱିନୀ କୁମାରଙ୍କ ମଧ୍ୟରେ ପଡୁ ନ ଥିଲା । ସେଥିପାଇଁ ଅଶ୍ୱିନୀ କୁମାରଙ୍କୁ ଇନ୍ଦ୍ର ଯଜ୍ଞରେ ଭାଗ ଦେଉ ନ ଥିଲେ । ଦେବତା ହୋଇ ମଧ୍ୟ ସୋମପାନରୁ ବଞ୍ଚିତ ହୋଇଥିବା ଯୋଗୁଁ ଅଶ୍ୱିନୀ କୁମାର ଅତି ଦୁଃଖରେ ରହୁଥିଲେ ।

ନବଯୌବନପ୍ରାପ୍ତ ଚ୍ୟବନ ସେମାନଙ୍କୁ କହିଲେ, "ଆପଣମାନେ ମୋତେ ଏହି ରୂପ, ଯୌବନ ଦାନ କରିଥିବା ଯୋଗୁଁ ମୁଁ

ପ୍ରତିଜ୍ଞା କରୁଛି ଯେ ଦେବରାଜ ଇନ୍ଦ୍ରଙ୍କ ସମକ୍ଷରେ ମୁଁ ଆପଣଙ୍କୁ ଅବଶ୍ୟ ସୋମପାନ କରାଇବି ।"

ଚ୍ୟବନ ଋଷି ଯୌବନ ଫେରି ପାଇଛନ୍ତି ଏହି ସଂବାଦ ଚାରିଆଡ଼େ ବ୍ୟାପିଗଲା । ରାଜା ଶର୍ଯ୍ୟାତି ନିଜର କନ୍ୟା ଓ ଜାମାତାଙ୍କୁ ଦେଖିବାକୁ ଆସିଲେ ଓ ସେ ଋଷିଙ୍କୁ ଦେଖି ଆଖିକୁ ବିଶ୍ୱାସ କରି ପାରିଲେ ନାହିଁ ଓ ମନେ ମନେ ନିଜ କନ୍ୟାଙ୍କୁ ଧନ୍ୟବାଦ ଦେଲେ ।

ଚ୍ୟବନ ଅଶ୍ୱିନୀ କୁମାରଙ୍କୁ ଦେଇଥିବା ନିଜର ପ୍ରତିଶ୍ରୁତି କଥା ଚିନ୍ତାକରି ରାଜା ଶର୍ଯ୍ୟାତିଙ୍କୁ କହିଲେ, "ମହାରାଜ, ଆପଣ ଏକ ବଡ଼ ଧରଣର ଯଜ୍ଞ କରନ୍ତୁ । ମୁଁ ଆପଣଙ୍କର ଯାଜକ ହେବି ।"

## ବଜ୍ରର ପରୀକ୍ଷା

ଶୀଘ୍ର ଏକ ବଡ଼ ଯଜ୍ଞର ଆୟୋଜନ ହେଲା । ଚ୍ୟବନ ଋଷି ଏହାର ପୁରୋଧା ହେଲେ । ସେ ଅଶ୍ୱିନୀକୁମାରଙ୍କ ପାଇଁ ସୋମରସ ଗ୍ରହଣ କଲେ । ତତ୍‌କ୍ଷଣାତ୍ ଇନ୍ଦ୍ର ସେଠାରେ ଆବିର୍ଭୂତ ହୋଇ କହିଲେ, 'ମୁନି' ଆପଣ ଅଶ୍ୱିନୀ କୁମାରଙ୍କୁ ସୋମରସ ପ୍ରଦାନ କରନ୍ତୁ ନାହିଁ, କାରଣ ସେଥିପାଇଁ କେବେହେଁ ସେମାନେ ଯୋଗ୍ୟ ନୁହନ୍ତି । ସେମାନେ ଦେବତା ହୋଇ ମଧ୍ୟ ଇଚ୍ଛାନୁଯାୟୀ ରୂପ ଗ୍ରହଣ କରି ମନୁଷ୍ୟମାନଙ୍କ ମଧ୍ୟରେ ଭ୍ରମଣ କରୁଛନ୍ତି । ଏହାଛଡ଼ା ଚିକିତ୍ସାଦ୍ୱାରା ସେମାନେ ଜୀବିକା ନିର୍ବାହ କରନ୍ତି । ତେଣୁ ସେମାନେ ଏପରି ସମ୍ମାନର ପାତ୍ର ନୁହନ୍ତି ।"

ଚ୍ୟବନ କହିଲେ, "ଦେବରାଜ, ମୁଁ ପ୍ରତିଶ୍ରୁତି ଦେଇଛି ଯେ ଅଶ୍ୱିନୀ କୁମାର ଦୁହେଁ ସୋମପାନ କରିବେ । ସେମାନେ ଦେବତା ହୋଇ କାହିଁକି ଏଥିରୁ ବଞ୍ଚିତ ହେବେ ମୁଁ ବୁଝିପାରୁ ନାହିଁ । ମୁଁ ନିଶ୍ଚୟ ମୋର ପ୍ରତିଶ୍ରୁତି ରକ୍ଷା କରିବି ।"

ଇନ୍ଦ୍ର ପୁଣି ଭୟ ପ୍ରଦର୍ଶନ କରି କହିଲେ, "ଯଦି ଆପଣ ଏଥିରୁ ନିବୃତ୍ତ ନ ହୁଅନ୍ତି, ତା' ହେଲେ ଏହି କମ୍ପିତ ବଜ୍ରକୁ ଲକ୍ଷ୍ୟ କରନ୍ତୁ । ଏହା ଶୀଘ୍ର ଆପଣଙ୍କ ପ୍ରତି ପ୍ରଯୁକ୍ତ ହେବ ।"

ଋଷି ଇନ୍ଦ୍ରଙ୍କୁ ସ୍ପର୍ଶ ଅଳ୍ପ ମିଶିଦେଇ ଅଶ୍ୱିନୀ କୁମାରଙ୍କ ସମକ୍ଷେ ସୋମରସ ଗ୍ରହଣ କଲେ ।

ବୃତ୍ରହନ୍ତା ଇନ୍ଦ୍ର ମଧ୍ୟ କାଳକ୍ଷେପ ନ କରି ନିଜର ଅମୋଘ ବଜ୍ର ଅସ୍ତ୍ରକୁ ନିକ୍ଷେପ କରିବାକୁ ଉଦ୍ୟତ ହେଲେ ।

ଚ୍ୟବନ ବହୁକାଳ ତପସ୍ୟା ଦ୍ୱାରା ସିଦ୍ଧି ଲାଭ କରିଥିଲେ । ସେ ଅତ୍ୟନ୍ତ ତେଜସ୍ୱୀ ଓ ଶକ୍ତିଶାଳୀ ଥିଲେ । ସେ ମନ୍ତ୍ର ପାଠ କରି ଇନ୍ଦ୍ରଙ୍କର ବାହୁ ଦ୍ୱୟକୁ ସ୍ତମ୍ଭିତ କଲେ । ଇନ୍ଦ୍ରଙ୍କର ପ୍ରହାରୋଦ୍ୟତ ବାହୁ ବଜ୍ର ଧାରଣ କରି ସେହିପରି ରହିଗଲା । କିନ୍ତୁ ଏତିକରେ ସନ୍ତୁଷ୍ଟ ନ ରହି ଚ୍ୟବନ ପ୍ରଜ୍ୱଳିତ ହୋମାଗ୍ନିରେ ଏକ ରାକ୍ଷସର ଉତ୍ପତ୍ତି ପାଇଁ ଆହୁତି ଦେଲେ । ସଙ୍ଗେ ସଙ୍ଗେ ବିକଟାଳ ମୁଖ ଓ ଦନ୍ତଯୁକ୍ତ ଏକ ଭୀଷଣକାୟ ରାକ୍ଷସ ହୋମାଗ୍ନି ମଧ୍ୟରୁ ବାହାରି ଇନ୍ଦ୍ରଙ୍କ ଆଡ଼କୁ ଧାଇଁ ଆସିଲା ।

ଋଷି କୋପାନଳରେ ନିଷ୍ପ୍ରଭ ଓ ଭୟାର୍ତ୍ତ ଇନ୍ଦ୍ର ମୁନିଙ୍କର ଶରଣାଗତ ହୋଇ କହିଲେ, "ଭୃଗୁନନ୍ଦନ ! ଆପଣଙ୍କର ଇଚ୍ଛା ପୂର୍ଣ୍ଣ ହେବ । ଅଶ୍ୱିନୀ କୁମାର ଦୁହେଁ ସୋମପାନର ଅଧିକାରୀ ହେବେ । ଆଜିଠାରୁ ସେମାନେ ଅନ୍ୟ ଦେବତାମାନଙ୍କ ସହିତ ସମାନ ଆସନ ଲାଭ କରିବେ ।" ତଥାପି ଦେବରାଜଙ୍କ ପକ୍ଷରେ ନିଜର କଡ଼ମାକୁ ପୂରାପୂରି ଛାଡ଼ିବା ସମ୍ଭବ ନୁହେଁ । ସେ ପୁଣି କହିଲେ, "ଆପଣଙ୍କୁ ପରୀକ୍ଷା କରିବା ପାଇଁ କେବଳ ମୁଁ ଏ ସବୁ କରୁଥିଲି । ଋଷିଙ୍କର କାର୍ଯ୍ୟ ସାଧନ କରିବା ତ ଆମର ଧର୍ମ ।"

ଚ୍ୟବନ ସନ୍ତୁଷ୍ଟ ହୋଇ ଯଜ୍ଞରୁ ଜାତ ଅସୁରକୁ ନିବାରଣ କଲେ । ଇନ୍ଦ୍ରଙ୍କର ସମକ୍ଷରେ ଅଶ୍ୱିନୀକୁମାର ଦୁହେଁ ସୋମପାନ କଲେ ।

ଲୋମଶ ଋଷି ଯୁଧିଷ୍ଠିରଙ୍କୁ କହିଲେ ଚ୍ୟବନଙ୍କ କୀର୍ତ୍ତି ସହିତ ଜଡ଼ିତ ଏହି ସରୋବରରେ ସ୍ନାନ କରି ଆପଣ ଧନ୍ୟ ହୁଅନ୍ତୁ । ରାଜା ନିଜର ପତ୍ନୀ ଓ ଭାଇମାନଙ୍କ ସହିତ ସେହି ସରୋବରରେ ସ୍ନାନ କରି ଅନ୍ୟ ତୀର୍ଥ ଦର୍ଶନରେ ବାହାରିଲେ ।



# ମୋଟା ରାଜାଙ୍କ କାହାଣୀ

ଡାକ୍ତର ଗଗନ ମିଶ୍ର

ବହୁତ ଦିନ ତଳର କଥା । ବିଷ୍ଣୁପୁର ରାଜ୍ୟର ମହାରାଜା ସିଂହ ମର୍ଦ୍ଦନ ନିଜ ଦେହରେ ଚର୍ବି ବଢ଼ିଯାଇଥିବାରୁ ଚଳପ୍ରଚଳ ହୋଇପାରୁ ନ ଥାଆନ୍ତି । ମହାରାଜାଙ୍କୁ ଗୋଟିଏ ମଖମଲ ଦିଆ ଚୌକିରେ ବସେଇ ଉଆସ ଭିତରେ ଗୋଟିଏ ଜାଗାରୁ ଅନ୍ୟ ଜାଗାକୁ ନେବା ଆଣିବା କରାଯାଉଥାଏ । ସିଂହାସନରେ ବସିଲେ ମଧ୍ୟ ସେ ପାଞ୍ଚ-ମିନଟ୍‌ରେ ଟକ୍‌କା ହୋଇ ଯାଉଥାଆନ୍ତି । ତେଣୁ ମହାରାଜାଙ୍କ ଚିକିତ୍ସା ପାଇଁ ମହାମନ୍ତ୍ରୀ ଜଳବରାହ ବିଭିନ୍ନ ରାଜ୍ୟର ବୈଦକୁ ଡକାଇଲେ ।

ରାଜ୍ୟରେ ଧନ୍ୱନ୍ତରୀ ବୈଦମାନଙ୍କର ଏକ ବିରାଟ ସଭା ହେଲା । ମହାରାଜାଙ୍କୁ ସେଠାକୁ ଅଣାଗଲା । ତାଙ୍କଠାରୁ ପ୍ରଥମେ ସମସ୍ତ କଥା ସେମାନେ ଶୁଣିଲେ ଓ ତାଙ୍କ ଦେହ ମଧ୍ୟ ପରୀକ୍ଷା କରାଗଲା । ତା'ପରେ ସମସ୍ତେ ଏକମତ ହେଲେ ଯେ ଅତ୍ୟଧିକ ଚିନି ମାଷ୍ଠପୂ ଖାଦ୍ୟ ଖାଇବା ଯୋଗୁ ମହାରାଜାଙ୍କର ଏ ଦୁରବସ୍ଥା । କିନ୍ତୁ ପ୍ରକୃତ କଥା ହେଲା । ସେ ଦେଶର ସବୁଠାରୁ ବଡ଼ଖେଳ କସରତ ହେଲା ମିଠେଇ ଖାଇବା, ପ୍ରତିବର୍ଷ ବିଷ୍ଣୁପୁର ରାଜ୍ୟରେ ସେ ପାଇଁ ଗୋଟିଏ ମେଳା ହୁଏ । ବିଭିନ୍ନ ଦେଶରୁ ମିଠେଇ ଖିଆଳୀମାନେ ଆସନ୍ତି । ମହାରାଜାଙ୍କ ଉପସ୍ଥିତିରେ ଏ ଅନୁଷ୍ଠାନ ଆରମ୍ଭ କରାହୁଏ । ସକାଳୁ ମିଠେଇ ଖାଇବା ଆରମ୍ଭ ହୋଇ ସନ୍ଧ୍ୟା ପର୍ଯ୍ୟନ୍ତ ଚାଲେ । ମହାରାଜା ମଧ୍ୟ ମିଠେଇ ଖାଇବାରେ ଯୋଗ ଦିଅନ୍ତି । ସବୁଠାରୁ ବେଶି ରସଗୋଲା ଖାଇବା ଲୋକକୁ ଗୋଟିଏ ସୁନା କପୋତ ପୁରସ୍କାର ଦିଆଯାଏ । ମହାରାଜାଙ୍କର ରସଗୋଲା ପ୍ରତି ଭାରି ଲୋଭ । ତେଣୁ ସେ ପ୍ରତି-

ଯୋଗିବାରେ ପ୍ରଥମ ହେବାପାଇଁ ବାହାଦୁରୀ ଦେଖାଇ ପ୍ରତିଦିନ ଏକ-ଶହ କରି ରସଗୋଲା ଖାଆନ୍ତି । ଏହିପରି ବର୍ଷ ବର୍ଷ ଧରି ସେ କରି-ଆସୁଛନ୍ତି ।

ପିଲାମାନେ ତୁମେ ତ ଜାଣିଥିବ ଯେ ଆମ ଖାଦ୍ୟରେ ତିନୋଟି ପ୍ରଧାନ ଜିନିଷ ଅଛି । ତା ହେଉଛି ଶର୍କରାଜାତୀୟ ଖାଦ୍ୟ, ଛେନା ଜାତୀୟ ଖାଦ୍ୟ ଓ ତେଲ ଜାତୀୟ ଖାଦ୍ୟ । ଏହାଛଡ଼ା ଜଳ, ଲୁଣ ଓ ଭିଟାମିନ୍ ବା ଖାଦ୍ୟ ପ୍ରାଣ ମଧ୍ୟ ରହିଛି । କିନ୍ତୁ ଏ ସବୁ ଭିତରେ ଶର୍କରା ଜାତୀୟ ଖାଦ୍ୟ ଦେହରେ ଚର୍ବି ଜମେଇବା ପାଇଁ ବେଶି ଦାୟୀ । ବୈଜ୍ଞାନିକମାନେ କହନ୍ତି ବେଶି ତେଲ ବା ଘିଅ ଖାଇବା ଦ୍ୱାରା ଦେହରେ ଯେତେ ଚର୍ବି ଜମିବ, ବେଶି ଶର୍କରା ଖାଇବା ଦ୍ୱାରା ତା ଅପେକ୍ଷା ଅନେକ ଗୁଣ ଅଧିକ ଚର୍ବି ଜମିବ । ଶର୍କରା ଜାତୀୟ ଜିନିଷ ହେଲା ଭାତ, ଆଳୁ, ଚିନି, ଗୁଡ଼, ମିଠେଇ, ପାଚିଲା କଦଳୀ ଇତ୍ୟାଦି। ରୋଟି, ମାଛ, ମାଂସ, ଦୁଧ, ଅଣ୍ଡା, ଫଳ ଓ ପନିପରିବା ଖାଇଲେ ଚର୍ବି ବିଶେଷ ବଢ଼େ ନାହିଁ ।

ମହାରାଜା ସିଂହମର୍ଦ୍ଦନ ଅତ୍ୟଧିକ ମିଠା ଖାଇବା ଦ୍ୱାରା ତାଙ୍କର ଏ ରୋଗ ହୋଇଛି । ତେଣୁ ତାଙ୍କୁ ପ୍ରତିଦିନ ଅଧା ପେଟରେ ରଖିବାକୁ ହେବ ଓ ଭାତ, ଆଳୁ ଓ ମିଠେଇ ଖାଇବା ସଂପୂର୍ଣ୍ଣ ଭାବେ ବନ୍ଦ-କରିବାକୁ ହେବ । ଏହାଛଡ଼ା ମହାରାଜା ପ୍ରତିଦିନ ଦଣ୍ଡ ବୈଠକ କରିବେ ଓ ସକାଳ ସନ୍ଧ୍ୟାରେ ବଗିଚାରେ ସାତଥର ବୁଲିବେ । ବୈଦ୍ୟସଙ୍ଘ ଏହି ବିକିତ୍ସା ଦେଲେ । କିନ୍ତୁ ଏସବୁ କହିବା କିପରି ସମ୍ଭବ ହେବ ? ତା ଅବଶ୍ୟ ସେମାନେ କହିଲେ ନାହିଁ । ସଭା ଭଙ୍ଗ ହେଲା । ତା'ପରେ ରଜାଙ୍କୁ ଏ କଥାଟା କହିବାକୁ ପଡ଼ିବ । ରଜା ଟିକେ ବଦ୍‌ରାଗୀ । କେଜାଣି ଚିଡ଼ିଯିବେ, ତେଣୁ ମହାମନ୍ତ୍ରୀ ରାଜବୈଦ୍ୟଙ୍କ ସାଥିରେ ପରାମର୍ଶ କଲେ ଓ କୌଶଳଟି ବାହାର କଲେ । ରଜାଙ୍କୁ ସେ କିଛି ନଜଣେଇ ସେ ରାଜ୍ୟର ପୋଖତ ବୃଣିଆଙ୍କୁ ଡକାଗଲା । ସେ ଗୋଟିଏ ମନ୍ତ୍ର ମୁଦି ତିଆରି କଲେ । ମୁଦିକୁ ଲୋଭନୀୟ କରିବା ପାଇଁ ସେଥିରେ ହୀରା, ନୀଳା ଆଦି ନାନା ପ୍ରକାର ପଥର ଖଞ୍ଜା ହେଲା । ସେ ମୁଦିର ଗୁଣ ହେଲା ସେ ମୁଦିକୁ ଯିଏ ପିନ୍ଧିବ ତାକୁ ମୋଟେ ରୋଗ ହେବନି । ତାଛଡ଼ା ଚିନି,ଗୁଡ଼,ମିଠେଇ ଦେଖିଲେ

ତାଙ୍କୁ ବାନ୍ତି ଲାଗିବ । କିନ୍ତୁ ଗୁଣିଆ ଭଳି ବୁଢିଆ ଲୋକ । ସେ ମହାରାଜାଙ୍କୁ କେବଳ ଅଧା ପେଟରେ ରଖିବାକୁ ଚାହୁଁଥିଲେ । ତେଣୁ ଗାଧୋଇବାବେଳେ ମୃଦକୁ କାଟି ପକାଇବାକୁ ପରାମର୍ଶ ଦେଲେ । ମୃଦ ବାହାରିଗଲେ ତାଙ୍କୁ ସଙ୍ଗେ ସଙ୍ଗେ ଭୋକ ଲାଗିବ । ତେଣୁ ମହାରାଜାଙ୍କୁ ରୋଟି, ଛେନା, ତରକାରୀ ଓ ଫଳଜାତୀୟ ଖାଦ୍ୟ ଠିକ୍ ଗାଧୋଇ ସାରିଲା ପରେ ପରେ ଦିଆଯିବ । ତାପରେ ପୁଣି ସେ ମୃଦ ପିନ୍ଧିବେ । ମୃଦର ବିଶେଷତ୍ୱ ଏହି ଯେ ମୃଦକୁ ଦେଖିବାମାତ୍ରେ ମହାରାଜ ତାଙ୍କୁ ପିନ୍ଧିବାକୁ ଚାହିଁବେ । ଏବଂ କେହି ଜଣେ ତାଙ୍କୁ କାଟି ପକାଇବା ପାଇଁ ନ କହିଲେ ସେ କେବେହେଲେ ତାଙ୍କୁ କାଟିବେ ନାହିଁ, ଏମିତି ତିନି, ଚାରିବର୍ଷ ଚାଲିଗଲା । ରାଜାଙ୍କ ଦେହ ଆସ୍ତେ ଆସ୍ତେ ସୁସ୍ଥ ସବଳ ହେଲା ଓ ସେ ଭଲଭାବରେ ଚଳପ୍ରଚଳ କଲେ ଓ ନିଜର ଦୈନନ୍ଦିନ କାମ ସ୍ୱଚ୍ଛନ୍ଦରେ କରି ପାରିଲେ, ତା ପରେ ରାଜ୍ୟରେ ମିଠେଇ ମେଳା ବନ୍ଦ ହୋଇଗଲା ଓ ସେ ଜାଗାରେ ବାର୍ଷିକ କୁସ୍ତି କସରତ ମେଳା ଆରମ୍ଭ ହେଲା । ସେ ବର୍ଷ ମହାରାଜା ନିଜେ ଖେଳରେ ଯୋଗଦେଲେ ଓ ଭାର ଉତ୍ତୋଳନରେ ସର୍ବଶ୍ରେଷ୍ଠ ପୁରସ୍କାର ପାଇଲେ । ସେତେବେଳେ ସମସ୍ତେ ମନ୍ତ୍ରୀଙ୍କୁ ଧନ୍ୟ ଧନ୍ୟ କଲେ ଓ କହିଲେ ଏ ପରିବର୍ତ୍ତନ ପାଇ ମନ୍ତ୍ରୀଙ୍କୁ ଗୋଟିଏ ସୁନା କପୋତ ଦିଆଯାଉ । ରାଜା ମଧ୍ୟ ମହାଖୁସିରେ ସେଥିରେ ରାଜି ହେଲେ ତାପରେ ଗୋଟିଏ ସ୍ୱତନ୍ତ୍ର ଅନୁଷ୍ଠାନରେ ଏ କାର୍ଯ୍ୟ ସମାପନ ହେଲା ।

ମୁଁ ଯାଇଥିଲି ଯେ ସେ ରାଜ୍ୟରେ ତୁମ ପାଇଁ ମିଠେଇଟିଏ ବି କିଣିବାକୁ ପାଇଲି ନାହିଁ, ଖାଲି ହାତରେ ଫେରି ଆସିଲି ।



# ଆଃ, କି ଅସନା ! ଓଃ, କି ସୁନ୍ଦର !

ସାହିତ୍ୟଭୂଷଣ ଶ୍ରୀ ଉଦୟନାଥ ଷଡ଼ଙ୍ଗୀ

ରାତି ପାହିବ ଆସୁଛି । ଭଲ ହୋଇ ଫର୍ଚ୍ଚା ହୋଇ ନାହିଁ । ଝିକର ନିଦ ଆଗ ଭାଙ୍ଗିଗଲା । ସେ ଉଠିବସି ଦେଖିଲା, ସମସ୍ତେ ଶୋଇଅଛନ୍ତି । ଭାଇନା ତ ଘଡ଼ର୍ ଘଡ଼ର୍ ନାକ ଘୁଙ୍ଗୁଡ଼ି ମାରୁଛି । ଆଉ ଚିନ୍ତା କଅଣ ? ତାକୁ ସୁବିଧା ମିଳିଗଲା । ସେ ଥିର୍ ହୋଇ ବିଛଣାରୁ ଉଠିପଡ଼ିଲା । ବାଡ଼ି କବାଟ ଫିଟାଇ ବଗିଚା ଭିତରକୁ ଚାଲିଗଲା ।

କୁହୁଡ଼ି ଘୋଟି ରହିଛି । ଚାରିଆଡ଼େ ଅନ୍ଧାର ଦିଶୁଅଛି । ଝିକ ମନ ଟିକିଏ ଦବିଗଲା । ତଥାପି ସେ ପାହାଚ ତଳକୁ ଓହ୍ଲାଇ ପଡ଼ିଲା । ଆଗ ଦେଖି ପକାଇଲା, ପାଦ ପାଖରେ ଗୋଟାଏ ବଡ଼ ସଁବାଳୁଆ । କାଳିଆ ଅସୁନ୍ଦର ପୋକଟା । ଦେହଯାକ ଛୁଞ୍ଚି ପରି ଲୁମ ଠିଆ ହୋଇଅଛି ।

ଝିକ ସଁବାଳୁଆକୁ ଭଲ ରୂପେ ଜାଣିଛି । ଥରେ ଗୋଟାଏ ସଁବାଳୁଆ ମାଡ଼ି ପକାଇଥିଲା । ତା ଲୁମଯାକ ପାଦରେ ଗଳିଗଲା । ପାଦ ଫାଣ୍ଡ ଗଲୁ ହେଲା, ତାକୁ ବଡ଼ କଷ୍ଟ ଲାଗିଲା । କୁଣ୍ଡାଇ କୁଣ୍ଡାଇ ପାଦ ନାଳ ପଡ଼ିଗଲା । ଶେଷକୁ ମା ନେପାଳିପତ୍ର ଆଣି ପାଦରେ ଘଷିଲେ । ଗରମ ସୋରିଷତେଲ ମାଲିସ କଲେ । ଦୁଇଦିନ ଯାଏ ଏହା ଲାଗି ରହିଥିଲା ।

ସେଇ ଦିନୁ ସଁବାଳୁଆ ପୋକ ଉପରେ ଝିକର ବଡ଼ ରାଗ । ଗୋଟାଏ ଦେଖିଦେଲେ ଚମକି ପଡ଼େ । ନାକ ଟେକିଦେଇ କହେ, "କି ଅସନା ! କି ଖରାପ ଜୀବ !" ତା ଉପରକୁ ମେଞ୍ଚାଏ ଛେପ ପକାଇ ଦିଏ । ନ ହେଲେ ବାଡ଼ିରେ ପିଟି ମାରିପକାଏ । ଗୋଟାଏ ପତରରେ ଧରିନେଇ ଦୂରରେ ଫିଙ୍ଗିଦିଏ—ଯେପରି ଆଉ କେହି ନ ମାଡ଼ିବେ ।

ଆଜି ଯେମିତି ଦେଖିଛି, ତା ପାଟିରୁ ବାହାରି ପଡ଼ିଲା, 'ଆଃ କି ଅସନା ! ସକାଳୁ ଏଇଟାକୁ ଦେଖିଲାଣି; ଦିନଯାକ କଅଣ ହେବ କେଜାଣି ?'

ଖଣ୍ଡେ ଭଙ୍ଗାଇଟା ଚଳ୍ଟ ଗୋଟାଇ ଆଣିଲା । ସେଥିରେ ପୋକ-ଟାକୁ ଛେଚି ମାରିପକାଇଲା । ମେଞ୍ଚାଏ ପୂଜ ବାହାରି ପଡ଼ିଲା । ଗୋଟିଏ ଶୁଖିଲା ପତରରେ ଟେକିନେଇ ଦୂରକୁ ଫିଙ୍ଗିଦେଲା ।

ବଗିଚା ଭିତରକୁ ଗଲା । ପତରରୁ ଥପଥପ ହୋଇ କାକର ପଡ଼ୁଛି । ଗଛରେ କେତେ ପ୍ରକାର ଫୁଲ ଫୁଟିଅଛି । ସୁଲୁସୁଲିଆ ପବନରେ ଫୁଲ ପେନ୍ଥା ଦୋଳି ଖେଳୁଅଛି । ଗୁଡ଼ାଏ ପ୍ରଜାପତି ସୁନ୍ଦର ଡେଣା ହଲାଇ ଏଠୁ ସେଠାକୁ ଉଡ଼ି ଯାଉଛନ୍ତି ।

ଟିକି ପ୍ରଥମେ ଭାବିଥିଲା, ଗଛର ଫୁଲସବୁ ଏପରି ଉଡ଼ି ବୁଲୁ-ଛନ୍ତି । ପାଖକୁ ଯାଇ ଦେଖିଲା, ଫୁଲ ନୁହେଁ, ଫୁଲ ପରି ସୁନ୍ଦର ପ୍ରଜାପତି । ଖୁବ୍ ଖୁସି ହୋଇଗଲା । ତା' ପାଟିରୁ ବାହାରି ପଡ଼ିଲା, 'ଓଃ, କି ସୁନ୍ଦର !'

ଗୋଟିଏ ପ୍ରଜାପତି ଧରିବାକୁ ହାତ ବଢ଼ାଇଲା । ମାତ୍ର ଧରି ପାରିଲା ନାହିଁ । ପ୍ରଜାପତିଟି ଉଡ଼ିଗଲା । ଆଉ ଗୋଟିକୁ ଦେଖିଲା । ତାକୁ ଧରିବାକୁ ଗଲାବେଳକୁ ସେ ମଧ୍ୟ ଉଡ଼ିଗଲା ।

ପ୍ରଜାପତି ପଛରେ ଗୋଡ଼ାଇ ଗୋଡ଼ାଇ ଟିକି ଆମ୍ବଗଛ ମୂଳକୁ ଚାଲିଗଲା ।

ଏହି ସମୟରେ କିଏ ହସିଉଠିଲା । ଟିକି ଚମକି ପଡ଼ିଲା । ଥୁ ଥୁ କରି ଛାତିକୁ ଛେପ ପକାଇଦେଲା । ଚାରି ଆଡ଼କୁ ଚାହିଁଲା । ଦେଖିଲା କେହି ନାହାନ୍ତି । ତେବେ ହସିଲା କିଏ ?

ପୁଣି ହସ ଶୁଭିଲା ଉପରୁ । ଟିକି ପଚ ଗହଳକୁ ଚାହିଁଦେଲା । ଦେଖିଲା ଡାଳରେ ଗୋଟିଏ ହଳଦୀବସନ୍ତ ଚଢ଼େଇ ବସିଅଛି । କି ସୁନ୍ଦର ତା ଦେହ । ଯେପରିକି ବଟା ହଳଦୀ କିଏ ଦେହଯାକ ବୋଳି ଦେଇଛି ।

ଟିକି ତାକୁ ପୁଣି ପଚାରିଲା—ତୁ ହସିଲୁ ?

'ହଁ'—ହସିହସି ଚଢ଼େଇଟି ଉତ୍ତର ଦେଲା ।

"କାହିଁକି ?" ଟିକି ପୁଣି ପଚାରିଲା । 'ତୋର କଣ ହସପେଟ ଫାଟି ଯାଇଛି ? ନା ତୁ ହସଲଡୁ ଖାଇଅଛୁ ?'

ଚଢ଼େଇ ହସି ହସି କହିଲା—ତୁ ବଡ଼ ବୋକା । ତୋ ବୋକାମି ଦେଖିଲେ କିଏ ନ ହସିବ ? ଆଚ୍ଛା କହିଲୁ, ଏତେ ସକାଳୁ ତୁ କାହିଁକି ଏଠାକୁ ଆସିଛୁ ?

ଟିକିକୁ ବଡ଼ ରାଗ ଲାଗିଲା । ସେ ରାଗିଯାଇ କହିଲା, ମୁଁ କଅଣ ବୋକା ? ଦେଖୁନୁ ଚଗ, ମୁଁ ମଣିଷ ପିଲା । ପ୍ରଜାପତି ଧରିବା ପାଇଁ ଆମ ବଗିଚାକୁ ମୁଁ ଆସିଛି । ତୁ କାହିଁକି ଏଠାକୁ ଆସିଛୁ ?'

'ପ୍ରଜାପତି ଖାଇବା ପାଇଁ ।'

'ପ୍ରଜାପତି କଣ ଖାଆନ୍ତି ?'—ଟିକିର ପ୍ରଶ୍ନ ।

ଓଲଟି ଚଢ଼େଇ ପ୍ରଶ୍ନ କଲା, 'ତା ହେଲେ ତୁ ଧରୁଛୁ କାହିଁକି ?'

ଟିକି ଉତ୍ତର ଦେଲା, 'ଦେଖିଲୁ, କେଡ଼େ ସୁନ୍ଦର ଟିକିଟିକି ଚଢ଼େଇ । ତୋ ଦେହଟା ଖାଲି ହଳଦିଆ । ମାତ୍ର ଏମାନଙ୍କ ଦେହ ଛିଟ ଜାମା ପରି । ନାଲି, ହଳଦୀ, ନେଳୀ, ଛୁପିଛୁପିକିଆ ଭଙ୍ଗରେ କି ସୁନ୍ଦର ଶଢ ହୋଇଛି । ମୁଁ ଦୁଇ ଚାରିଟା ଧରିନେଇ ପୋଷିବି । ମୋ ବହି ଭିତରେ ରଖିବି । ଯେତେବେଳେ ଦେଖିବି, ସେତେବେଳେ ଖୁସି ଲାଗିବ । ପୁଣି ମୋ ସାଙ୍ଗମାନଙ୍କୁ ଦେଖାଇବି । ସେମାନେ ମୋତେ ପ୍ରଶଂସା କରିବେ ।'

'ସେଇଥିପାଇଁ ମୁଁ କହୁଥିଲି ବୋକା ।' ଚଢ଼େଇ ହସିହସି କହିଲା ।

ଟିକି ପୁଣି ରାଗିଗଲା । କହିଲା, 'ଥରେ ପର କହିଲି, ମୁଁ ମଣିଷ । ମୁଁ ବୋକା କାହିଁକି ହେବି ?'

ହଳଦୀ ବସନ୍ତ ଜବାବ ଦେଲା, 'ମଣିଷ ହିଁ ବୋକା ହୁଅନ୍ତି । ଆଉ କଣ ଚଢ଼େଇ କି ଅନ୍ୟ ଜୀବ ବୋକା ହେବେ ?'

ଟିକି ଗଛରେ ଟେଠୋରୁ ଝୁଲିଯାଉଥିଲା । ହଳଦୀବସନ୍ତ ଡାକିଲା, 'ରଙ୍ଗ ରଙ୍ଗ ପ୍ରଜାପତି କଅଣ ଚଢ଼େଇ ? ସେଇଥିପାଇଁ ମୁଁ ବୋକା କହିଲି । ସେଗୁଡ଼ାକ ଗୋଟାଏ ଜାତିର ପୋକ । ସେ କେବେ ପୋଷା ମାନିବେ ନାହିଁ । ରଖିଲେ ଦିନକ ଭିତରେ ମରିଯିବେ । ବରଂ ଦୁଇ ଚାରିଟାଧରି ମୋତେ ଦେଲେ ମୁଁ ଖାଇବି, ମୋ ଭୋକ ଛଡ଼ିଯିବ ।'

"ତୁ ବଡ଼ ନଷ୍ଟୁରି"—ଟିକି ରାଗିମାଗି କହିଲା ।

ଚଢ଼େଇ ସେହିପରି ରାଗ ଦେଖାଇ କହିଲା, 'ତୋ ଠାରୁ କମ୍ । ତୁ ଯେ ଏଇଲଗେ ଗୋଟିଏ ପ୍ରଜାପତିକୁ ଇଟାରେ ଛେଚି ମାରିଦେଲୁ । ତୁ କଣ ନଷ୍ଟୁରି ନୋହୁ ?'

ଟିକି ବଡ଼ ଜୋରରେ କହି ପକାଇଲା, 'ତୁ ବଡ଼ ମିଛୁଆ । ମୁଁ ପ୍ରଜାପତି ତ ମୋଟେ ଧରି ନାହିଁ; ମାରିଲି କେତେବେଳେ ?'

ହଳଦୀବସନ୍ତର ଉତ୍ତର—ମଣିଷ ହିଁ କେବଳ ମିଛ କହନ୍ତି । ଏ ଦୁନିଆରେ ମଣିଷ ବ୍ୟତୀତ ଆଉ କେହି ମିଛ କଅଣ ଜାଣନ୍ତି ନାହିଁ ।

କିଛି ସମୟ ଚୁପ୍ ରହି ସେ ପୁଣି କହିଲା, 'ତୁ ବଗିଚାକୁ ପ୍ରଥମେ ଆସିଲାବେଳେ ଗୋଟାଏ ପ୍ରଜାପତି ଛେଚି ମାରିଦେଲୁ ନାହିଁ ?'

'ମୁଁ ତ ପ୍ରଜାପତି ମାରିନାହିଁ । ଏତେ ସୁନ୍ଦର ଜୀବ, ତାକୁ କିଏ କଏ ମାରେ ? ତାକୁ ମାରିବାକୁ କାହା ହାତ ଯିବ ନା ? ମୁଁ ସଁବାଳୁଆଟାଏ ମାରି ଦେଲି । ସେଗୁଡ଼ାକ ଭାରି ଅସନା, ବଡ଼ ଖରାପ ଜୀବ ।'—ଟିକି କହିଲା ।

'ଆରେ ହଁ, ସେଇ ଅସନା ସଁବାଳୁଆ କାଲିକୁ ଏହିପରି ସୁନ୍ଦର ପ୍ରଜାପତିଟିଏ ହୋଇ ଉଡ଼ି ବୁଲୁଥାନ୍ତା । ତାକୁ ଦେଖି ତୁ ଖୁସି ହେଉଥାନ୍ତୁ, ତା ପଛରେ ଗୋଡ଼ାଉ ଥାଆନ୍ତୁ ।'

ଟିକି ଆଶ୍ଚର୍ଯ୍ୟ ହୋଇଗଲା । ସେ ଅସନା ସଁବାଳୁଆଟା ଏତେ ସୁନ୍ଦର ପ୍ରଜାପତି ହେବ କପରି ?

ଚଢ଼େଇ ବୋଧହୁଏ ତା ମନକଥା ବୁଝିପାରିଲା । କହିଁଲା ସ୍ୱରରେ କହିଲା, 'ତୁ ଯେଉଁ ପ୍ରଜାପତି ପଛରେ ଗୋଡ଼ାଉଛୁ, ଯାହାକୁ ଖାଇବା ପାଇଁ ମୁଁ ଠାକି ବସିଅଛି, ସେହି ପ୍ରଜାପତି ଅଣ୍ଡା ଦେବ । କଅଣ ଗୋଟାଏ ଦୁଇଟା ଅଣ୍ଡା ? ଅଇକୁ ଶହେ, ଦୁଇଶହ, ପାଞ୍ଚ ଶହ ଟିକିଟିକି ଅଣ୍ଡା । ସେଥିରୁ ପ୍ରଥମେ ଅତି ସାନସାନ ଛୁଆ ବାହାରିବେ । ଆଖିକୁ ନ ଦିଶିଲା ଭଳି କ୍ଷୁଦ୍ର ପୋକ । ସେହି ଛୁଆ ବଢ଼ିଗଲେ ହେବେ ସଁବାଳୁଆ । ସେମାନେ ଖାଲି ଗଛର ଓ ଳପତ୍ର ଖାଇବାରେ ଲାଗିଯିବେ । ଭାରି ପେଟୁ । ଯେଉଁ ଗଛରେ ଚଢ଼ିବେ, ତାର ସବୁ ପତ୍ରକୁ ଲଣ୍ଡା କରିଦେବେ । ସବୁବେଳେ ଖାଉଥିବେ । ଖାଇ ଖାଇ ବଡ଼ ହେଲେ ସେମାନଙ୍କ ଦେହରୁ ଏ ମୁନିଆଁ ରୁମତକ ଖସିପଡ଼ିବ । ପାଟିରୁ ଗୁଡ଼ାଏ ଲାଳ ବାହାରିବ । ସେହି ଲାଳକୁ ସେମାନେ ଦେହସାକ ବୋଳହେବେ, ତା ଭିତରେ ଲଟରପଟର ହେବେ । ପବନ ବାଜି, ଖରା ଖାଇ ସେ ଲାଳ ହୋଇଯିବ ଟାଣ ଆଉ ଦେଖାଯିବ ଠିକ୍ ଗୋଟିଏ ଅଣ୍ଡା ଭଳି । ତା ଭିତରେ ସଁବାଳୁଆ ବନ୍ଦୀ ହୋଇ ରହିଯିବ । ସେତେବେଳେ ତାକୁ କହନ୍ତି ଗୁଟି ବା ଖୋସା । କିଛିଦିନ ଗଲେ ସେ ଗୁଟି କାଟି ବାହାରି ଆସିବ ପ୍ରଜାପତି । ସେତେବେଳେ ମନକୁ ଧନ ତା ଦେହରୁ ବାହାରି ପଡ଼ିବ ଡେଣା ଦୁଇଟି । ରଙ୍ଗ ବିରଙ୍ଗ ଡେଣା । ନିଜ ରୂପ ଦେଖାଇ ସେମାନେ ଉଡ଼ି ବୁଲିବେ ଏ ଗଛରୁ ସେ ଗଛ, ଏ ଫୁଲରୁ ସେ ଫୁଲ । ସତେ ଯେମିତି ଫୁଲମାନଙ୍କୁ କହୁଥିବେ, 'ଦେଖ୍, ତୁମେ ସୁନ୍ଦର, ନା ମୁଁ ସୁନ୍ଦର ।'

'ନିଜ ସୁନ୍ଦରରୂପଟିଆ ଦେଖାଇଦେବାକୁ କଏ ନ ଚାହେଁ ? କଏ ଗର୍ବ ଅନୁଭବ ନ କରେ ? ତେଣୁ ସେମାନେ ହସିହସି ଉଡ଼ି ବୁଲିବେ । ତୋତେ ହସେଇବେ, ମୋତେ ହସେଇବେ । ମୁଁ ହସିବି— ସେମାନଙ୍କୁ ଖାଇଲେ ପେଟ ପୂରିବ । ତୁ ହସିବୁ ସେମାନଙ୍କ ସୁନ୍ଦର ରୂପ ଦେଖି ।''

ଆଉ ପାଖରୁ ଟିକିଏ ଚଇଁ ଚଇଁଆ ଡାକ ଶୁଭୁଗଲା । ହଳଦୀ ବସନ୍ତ ଓ ଟିକି ଏକ ସମୟରେ ତେଣିକି ଚାହିଁଦେଲେ ।

ପଛ ଗହଳରେ ସୁନ୍ଦର ଫୁଲ ନେନ୍ଥାଟିଏ ପବନରେ ଦୋହଲୁଛି । ତା ଉପରେ ପ୍ରଜାପତିଟିଏ ବସି ଡେଣା ତଳ ଉପର କରୁଅଛି । ସେ ଫୁଲ ସାଙ୍ଗରେ ଖେଳୁଛି, ଫୁଲ ଯେପରି ତାର ବନ୍ଧୁ ସାଙ୍ଗ, ଅନ୍ତରଙ୍ଗ ବନ୍ଧୁ । ଦୁହେଁ ଯାକ କେତେବେଳେ ହସି ଉଠୁଛନ୍ତି କେତେବେଳେ ମୁହଁକୁ ମୁହଁ ଯୋଡ଼ି ଦେଇ ଖୁସି ଗପ କରୁଛନ୍ତି । ପ୍ରଜାପତିଟି ଫୁଲ ସାଙ୍ଗରେ ଖେଳିବା ସଙ୍ଗେ ସଙ୍ଗେ ହଳଦୀ ବସନ୍ତ କଥା ସବୁ ମନଦେଇ ଶୁଣୁଅଛି ।

ପ୍ରଜାପତିକୁ ଦେଖିଲାକ୍ଷଣି ହଳଦୀ ବସନ୍ତର ପାଟି ଠାକୁ ଠାକୁ ହେଲା । ଟିକିର ହାତ ସଲ୍‌ସଲେଇ ଉଠିଲା ।

ପ୍ରଜାପତି ଫୁଲ ନେନ୍ଥା ଭିତରେ ନିଜ ଦେହ ଲୁଚାଇ ଦେଇ କହିଲା 'ତୁମେ ଦୁହେଁଯାକ ଅତି ଖରାପ । ଯେପରି କପଟୀ, ସେହିପରି ନିର୍ଦ୍ଦୟ । ମୁଁ ତ କାହାରି କିଛି ଦୋଷ କରିନାହିଁ । ମୋତେ ମାରିଦେବାକୁ ତୁମର ଏ ଷଡ଼ଯନ୍ତ୍ର କାହିଁକି ?'

ହଳଦୀ ବସନ୍ତ ରାଗି ଯାଇ କହି ପକାଇଲା, 'ଛୋଟ ମୁହଁରେ ବଡ଼ କଥା ! ତୁ ଏଡ଼େ ଟିକିଏ ଜୀବ ପୁଣି ଆମକୁ ଗାଳି ଦେଉଛୁ ?'

ଟିକି କିନ୍ତୁ ରାଗିଲା ନାହିଁ, ସେ ଖୁସି ହୋଇ ପଚାରିଲା । 'ମୁଁ ନିଷ୍ଠୁର ନୁହେଁ । ମୁଁ ଚାହୁଁଛି ତୋର ସାଙ୍ଗ ହେବି । ଏକାଠି ରହିବା, ଖେଳିବା, ଗପସପ ହେବା । ଯେମିତି ଫୁଲ ସାଙ୍ଗ ହୋଇଛୁ ସେମିତି ମୋ ସାଙ୍ଗ ହେବୁ ନାହିଁ ?'

'ନା ନା ପ୍ରଜାପତି ଉତ୍ତର ଦେଲା ।' ଫୁଲଟି ଅତି କୋମଳ ପୁଣି ସୁନ୍ଦର । ମୋ ଦେହ ମଧ୍ୟ ଖୁବ୍ ନରମ ଆଉ ସୁନ୍ଦର, ତେଣୁ ଆମେ ଦୁହେଁ ସାଙ୍ଗ ହୋଇଛୁ, ତୁମର ଆମର କଟିସ୍ ।

ହଳଦୀବସନ୍ତ ତ ସବୁବେଳେ ରାଗରେ ଗରଗର ହେଉଥାଏ । ପ୍ରଜାପତି କଥା ତାକୁ ବଡ଼ ଅଡୁଆ ଲାଗୁଥାଏ । 'ଭାରି ଉପକାରିଆ ବନ୍ଧୁଟାଏ ନା, ସାଙ୍ଗ ନ ହେଲେ ଆମେ ନିହାଲ ହୋଇଯିବୁ ।

'ଛଟଛଟ ହୋଇ ଜହ୍ନ ପକାଇଲା, ଧୀର ଭାବରେ ପ୍ରଜାପତି ଉତ୍ତରଦେଲା ""ମୋ ଦେହ ସିନା ଏତେ ଟିକଏ, କିନ୍ତୁ ସମସ୍ତଙ୍କର ଖୁବ୍ ଉପକାରୀ ମୁଁ । ତୁମେ ସେ ସବୁ ବୁଝିବ କୁଆଡ଼ୁ ?'

'କାହାର କଅଣ ଉପକାର କରୁଛ ?'—ଟିକି ପଚାରିଲା ।

'ଦୁନିଆରେ ଫଳ, ପତ୍ରପରିବା ସବୁ ମୁହିଁ କରଏ । ସେ ସବୁକୁ ତୁମେ ଖାଇ ଆନନ୍ଦ ପାଅ । ବର୍ତ୍ତମାନ ଏ ଫୁଲ ଉପରେ ବସିଛି । ଫୁଲର ରେଣୁ ସବୁ ମୋ ଗୋଡ଼ରେ ଶୁଣ୍ଢରେ ବୋଳି ହୋଇଯାଉଛି । ମୁଁ ଏଠାରୁ ଉଡ଼ିଯାଇ ଅନ୍ୟ ଫୁଲ ଉପରେ ବସିବି । ସେ ରେଣୁ ସେହି ଫୁଲରେ ଝଡ଼ି ପଡ଼ିବ । ତାହେଲେ ସେ ଫୁଲ ଫଳ ଧରିବ, ଫଳ ବଡ଼ହେବ, ପାଚିବ, ଜଗତବାସୀଙ୍କର ଉପକାରରେ ଲାଗିବ । ମୁଁ ଏ ଫୁଲରୁ ସେ ଫୁଲ ଉଡୁ ନ ଥିଲେ କିଛୁହେଲେ ଫଳ ହୁଅନ୍ତା ନାହିଁ । ଏଥିରୁ ବୁଝ ମୋର କରାମତି କେତେ ।'

ଟିକି ମନ ଦେଇ କଥା ଶୁଣୁଥିଲା । ପ୍ରଜାପତିକୁ ଚାହିଁ କହିଲା, ""ଆଉ ମୁଁ କେବେ ପ୍ରଜାପତି ଧରିବି ନାହିଁ କି ତା ପଛରେ ଗୋଡ଼ାଇବି ନାହିଁ ।""

ହଳଦୀବସନ୍ତ କିନ୍ତୁ ଏଥିରେ ରାଜି ହେଲା ନାହିଁ । ଯାହାର ସ୍ୱଭାବ ଖରାପ, ତାକୁ ଭଲ କଥା ମୋଟେ ଶୁଭେ ନାହିଁ । ସେ କାହାର ଶିକ୍ଷା ଦେଖିପାରେ ନାହିଁ । ହଳଦୀବସନ୍ତ ତ ସେଇ ମନ୍ଦ ସ୍ୱଭାବର ଜୀବ । ତେଣୁ ସେ ପ୍ରଜାପତିକୁ ଥଣ୍ଟରେ କାମୁଡ଼ି ଧରିଆଣିବାକୁ ଚାହିଁଲା ।

ପ୍ରଜାପତି ତ ଭାରି ଚାଲାକ୍, ଚତୁର, ସେ ଦେଲା ଫୁରର ।



## ଦଧୀଚି

### ଶ୍ରୀ ରଘୁନାଥ ସିଂହ

ଶ୍ୱେତ ଅଶ୍ୱଯୁକ୍ତ ଏକ ରଥ ମହର୍ଷି ଦଧୀଚିଙ୍କ ଆଶ୍ରମରେ ପହଞ୍ଚିଲା । ଏଥିରୁ ଓହ୍ଲାଇଲେ ସ୍ୱୟଂ ଶଚୀପତି ଇନ୍ଦ୍ର— ଦେହରେ ପୀତ ବସ୍ତ୍ର, ଗଳାରେ ମନ୍ଦାରଫୁଲ ମାଳା, ସ୍ୱର୍ଣ୍ଣ ଅଳଂକାରର ଭୂଷଣ, ମସ୍ତକରେ ହୀରକଖଚିତ ମୁକୁଟ, ହାତରେ ବଜ୍ର । ମୁଖ ତାଙ୍କର ପ୍ରସନ୍ନ ଦେଖାଯାଉଥିଲା । ସେ ଧୀର ଗତିରେ ଆଶ୍ରମ ଭିତରକୁ ପଶିଲେ ।

ଋଷି ଇନ୍ଦ୍ରଙ୍କୁ ଦେଖି କୁଶାସନରୁ ଉଠିପଡ଼ିଲେ । ତ୍ୟାଗ, ତପସ୍ୟା, ନିଷ୍କାମ ଦେବଭକ୍ତି ଯୋଗୁଁ ତାଙ୍କ ଦେହରୁ ଏକ ଉଜ୍ଜ୍ୱଳ ଜ୍ୟୋତି ବାହାରୁଥିଲା । ସଂପୂର୍ଣ୍ଣ ପ୍ରଶାନ୍ତ ଓ ନିର୍ଲିପ୍ତ ଭାବରେ ସେ ଦେବରାଜଙ୍କୁ ପାଛୋଟି ଆଣିବା ପାଇଁ ଗଲେ ।

ପ୍ରଣାମ ପୂର୍ବକ କହିଲେ, "ଦେବରାଜ ! ଏହି ଆଶ୍ରମ ଆପଣଙ୍କୁ ପାଇ ଧନ୍ୟ ହେଲା । ଆପଣ ଅନୁଗ୍ରହ ପୂର୍ବକ ପାଦ୍ୟ, ଅର୍ଘ୍ୟ, ଆସନ, ମଧୁପର୍କ ଗ୍ରହଣ କରନ୍ତୁ ।"

ଇନ୍ଦ୍ର ଋଷିଙ୍କର କୁଶଳ ଜିଜ୍ଞାସା କରି ଆଶ୍ରମର ଚତୁର୍ଦ୍ଦିଗକୁ ନିରୀକ୍ଷଣ କରିବାକୁ ଲାଗିଲେ । ବୃକ୍ଷ ଲତା ପୁଷ୍ପରେ ମଣ୍ଡିତ, ପବନରେ ହୋମ ହବିର ଗନ୍ଧ ଭାସି ଆସୁଛି । ଋଷିଙ୍କର ସ୍ୱକୀୟ ପବିତ୍ରତା ଆଶ୍ରମର କୋଣେ କୋଣେ ପ୍ରକଟିତ ହେଉଛି ।

ଇନ୍ଦ୍ର ପ୍ରସନ୍ନ ହୋଇ କହିଲେ, 'ମହର୍ଷି, ମୁଁ ଜାଣେ ଆପଣ ନିଷ୍କାମ, କୌଣସି ବସ୍ତୁ ପ୍ରତି ଆପଣଙ୍କର ଆକାଂକ୍ଷା ନାହିଁ । ତଥାପି ମୁଁ ଆଗ୍ରହୀ, ଆପଣଙ୍କର ବାଞ୍ଛିତ ବର ପ୍ରଦାନ କରିବି ।'

ଋଷିଙ୍କ ଉପରେ ଏହାର କୌଣସି ପ୍ରତିକ୍ରିୟା ହେଲା ନାହିଁ । ସେ କିଛି ନ କହି ଚୁପ୍ ହୋଇ ରହିଲେ ।

ଇନ୍ଦ୍ର ପୁଣି ଆଗ୍ରହରେ ପଚାରିଲେ, 'ମୁନିବର, ଆପଣ ତ୍ୟାଗର ପ୍ରତିମୂର୍ତ୍ତି । ଯଦି ତପସ୍ୟା କିମ୍ବା ସତ୍ୟର ସନ୍ଧାନରେ ଆପଣ ମୋର ସହାୟତା ଆଶା କରନ୍ତି, ତା' ହେଲେ ନିଃସଙ୍କୋଚରେ କହନ୍ତୁ । ମୁଁ କିଛି କରିପାରିଲେ ମନରେ ଅପାର ଆନନ୍ଦ ଅନୁଭବ କରିବି ।'

ଋଷି ଗମ୍ଭୀର ଭାବରେ ଉତ୍ତର ଦେଇ କହିଲେ, 'ଦେବରାଜ, ମୁଁ ଆପଣଙ୍କର ଆଗ୍ରହ ଦ୍ୱାରା ଅନୁଗୃହୀତ ହୋଇଛି । ଆପଣ ଯଦି ନିତାନ୍ତ କିଛି ଦେବାପାଇଁ ବ୍ୟାକୁଳ, ତା' ହେଲେ ମୋର ମନୋଭାବ ମୁଁ ପ୍ରକାଶ କରିବି ?'

'ନିଶ୍ଚୟ ପ୍ରକାଶ କରନ୍ତୁ ।'

'କୌଣସି ଆତ୍ମସ୍ଥ ଋଷି କୌଣସି ଭୌତିକ ସୁଖ ଚାହେଁ ନାହିଁ । ସେ ସାଂସାରିକ ସୁଖର ବହୁ ଦୂରରେ—'

ଇନ୍ଦ୍ର କହି ଉଠିଲେ, 'ମୁଁ ତାହା ଜାଣେ ମହର୍ଷି । ଆପଣଙ୍କର କ'ଣ ଇଚ୍ଛା ତାହା କହନ୍ତୁ, ମୁଁ ଅଚିରେ ତାହା ପୂରଣ କରିବି ।'

ଦଧ୍ୟଞ୍ଚ ପୂର୍ବପରି ଧୀର, ପ୍ରଶାନ୍ତ ଭାବରେ ଇନ୍ଦ୍ରି କହିଲେ 'ମଘବା, ମୋତେ ମଧୁବିଦ୍ୟା ଦାନ କରନ୍ତୁ ।'

'ମଧୁ ବିଦ୍ୟା ?' ଇନ୍ଦ୍ର ଚକିତ ହୋଇ ରହିଗଲେ ।

'ହଁ ଦେବେନ୍ଦ୍ର, ମଧୁବିଦ୍ୟା ।'

ମଧୁବିଦ୍ୟାର ଅଧିକାରୀ ଇନ୍ଦ୍ର, ଏ ବିଦ୍ୟା ବଳରେ ଅମୃତ ଲାଭ ହୁଏ । ଏହି ଦୁର୍ଲଭ ବିଦ୍ୟାକୁ ଦେବତାମାନେ ମଧ୍ୟ ଜାଣନ୍ତି ନାହିଁ । ଇନ୍ଦ୍ର ଋଷିଙ୍କର ଇଚ୍ଛା ପୂରଣ କରିବେ ବୋଲି ପ୍ରତିଶ୍ରୁତି ଦେଇଛନ୍ତି । ବର୍ତ୍ତମାନ ସିଏ କୁଆଡେ଼ ?

କିଛି ସମୟ ନିରବ ରହିଲେ, 'ମୁଁ ମଧୁବିଦ୍ୟା ଆପଣଙ୍କୁ ଦାନ କରିପାରେ—କିନ୍ତୁ ଗୋଟିଏ ସର୍ତ୍ତରେ ।'

'କି ସର୍ତ୍ତ ଦେବରାଜ ?'

'ଯଦି ଏ ରହସ୍ୟ ଆପଣ ଅନ୍ୟ କାହାକୁ ଶିଖାଇ ଦିଅନ୍ତି, ତା' ହେଲେ ଆପଣଙ୍କର ମସ୍ତକ ଛିନ୍ନ ହୋଇଯିବ।' ଇନ୍ଦ୍ର ହାତରେ ବଜ୍ରକୁ ଘୁରାଇ ଘୁରାଇ କହିଲେ ।

ଋଷି ଦୃଢ଼, ଅବିଚଳିତ ଭାବରେ କହିଲେ, 'ବଜ୍ରଧର, ମୁଁ ଏହି ସର୍ତ୍ତକୁ ସ୍ୱୀକାର କରୁଛି। ମୁଁ କେବେ ଏହାର ଉଲ୍ଲଙ୍ଘନ କରିବି ନାହିଁ ।'

ଇନ୍ଦ୍ର ଦଧ୍ୟଙ୍ଗ ଋଷିଙ୍କୁ ମଧୁବିଦ୍ୟାର ଉପଦେଶ ଦେଲେ ।

(୨)

ସାରା ସଂସାରରେ ମଧୁବିଦ୍ୟାର ଅନୁସନ୍ଧାନ ଚାଲିଥାଏ। ଦେବତା, ଦାନବ, ମନୁଷ୍ୟ ସମସ୍ତେ ମଧୁର ଆକାଂକ୍ଷୀ। କିନ୍ତୁ ଇନ୍ଦ୍ରଙ୍କ ଛଡ଼ା କେହି ଏହାକୁ ଜାଣନ୍ତି ନାହିଁ; ଇନ୍ଦ୍ର ମଧ୍ୟ କାହାକୁ ଜଣାନ୍ତି ନାହିଁ ।

ଅଶ୍ୱିନୀକୁମାର ଚାହିଁଲେ ଯେ ଇନ୍ଦ୍ର ଦଧ୍ୟଙ୍ଗଙ୍କୁ ମଧୁବିଦ୍ୟା ଦାନ କରିଛନ୍ତି। ଇନ୍ଦ୍ର ଓ ଅଶ୍ୱିନୀକୁମାରଙ୍କ ମଧ୍ୟରେ ବହୁଦିନ ମନୋମାଳିନ୍ୟ ଥିଲା। ଇନ୍ଦ୍ରଙ୍କ ଯୋଗୁଁ ଅଶ୍ୱିନୀକୁମାରଙ୍କୁ ଯଜ୍ଞର ଭାଗ ମିଳୁ ନଥିଲା। ମଧୁବିଦ୍ୟାର ରହସ୍ୟ ଜାଣିଲେ ସେମାନଙ୍କୁ ଯଜ୍ଞ ଭାଗରୁ କେହି ବଞ୍ଚିତ କରିପାରିବେ ନାହିଁ। ଦେବ-ବୈଦ୍ୟ ଭାବରେ ସେମାନଙ୍କର ଗୁଣ କିଏ ନ ଜାଣେ ? କିଏ ନ ଜାଣେ ସେମାନଙ୍କର ଅଲୌକିକ ଶକ୍ତି ? ମଧୁ ଯୋଗୁଁ ମଧ୍ୟ ସେମାନେ ସୋମପାନର ଅଧିକାରୀ ହୋଇପାରିବେ ।

ବର୍ତ୍ତମାନ ଅଶ୍ୱିନୀକୁମାରଙ୍କ ଲକ୍ଷ୍ୟ ହେଲା ଦଧ୍ୟଙ୍ଗ ଆଶ୍ରମ ।

(୩)

ଦଧ୍ୟଙ୍ଗ ତପସ୍ୟାରତ ଥିଲେ। ଅଶ୍ୱିନୀକୁମାର ଦୁଇ ଦୁଇ ଥର ଋଷିଙ୍କ ଆଶ୍ରମକୁ ଯାଉଥାନ୍ତି ଓ ତାଙ୍କର ଧ୍ୟାନ ଭଙ୍ଗ ନଥିବା ଯୋଗୁଁ ଫେରି ଆସୁଥାନ୍ତି। ଶେଷକୁ ଋଷିଙ୍କର ଧ୍ୟାନ ଭାଙ୍ଗିଲା। ସେ ଅଶ୍ୱିନୀକୁମାରଙ୍କୁ ତାଙ୍କର ଆସିବାର କାରଣ ପଚାରିଲେ।

'ଋଷି ପ୍ରବର ! ଏକ ବିଶେଷ ପ୍ରୟୋଜନରେ ଆମେ ଆପଣଙ୍କ ଆଶ୍ରମକୁ ଆସିଛୁ । କେବଳ ଆପଣଙ୍କ ଦ୍ୱାରା ଆମର ଉଦ୍ଦେଶ୍ୟ ସିଦ୍ଧି ହୋଇପାରିବ ।'

ଋଷି କହିଲେ, 'ଅତିଥି ମାନଙ୍କର ସନ୍ତୋଷ ବର୍ଦ୍ଧନ କରିବା ହେଉଛି ଅତିଥି ସତ୍କାରକଙ୍କର ଧର୍ମ । ତେଣୁ ଆପଣମାନଙ୍କର କ କାର୍ଯ୍ୟରେ ମୁଁ ଲାଗି ପାରିବି, ତାହା ବିନା ସଂକୋଚରେ ପ୍ରକାଶ କରନ୍ତୁ ।'

'ହଁ, ମହର୍ଷି, ଏହା ହେଉଛି ପୁରାତନ ପରମ୍ପରା । ଆପଣ ଗୋଟିଏ ମହାନ୍ ଗୁଣର ଅଧିକାରୀ । ସେଥିପାଇଁ ଆମେମାନେ ଏଠାକୁ ଆସିଛୁ ।' ଅଶ୍ୱିନୀ କୁମାର କହିଲେ ।

'ଦେବବୈଦ୍ୟ, ମୋ'ପାଖରେ ଯଦି ଏପରି କୌଣସି ଗୁଣ ଥାଏ, ଯାହାକି ଆପଣମାନଙ୍କ କାର୍ଯ୍ୟରେ ଲାଗି ପାରିବ, ତାହା ମୁଁ ଦେଇ ପାରିଲେ—ମୋ'ର ପରମ ସୌଭାଗ୍ୟ ବୋଲି ମନେ କରିବି ।'

'ଆପଣ ତାହା ଦେଇ ପାରିବେ ?' ଅଶ୍ୱିନୀ କୁମାର ହସି ପଚାରିଲେ ।

ଋଷି ମୁରୁକି ହସି କହିଲେ 'ସାମର୍ଥ୍ୟ ଥିଲେ କେଉଁ ଦାତା ଦେବାକୁ ଇଚ୍ଛା କରିବ ନାହିଁ ?'

'ଆପଣଙ୍କର ସେ ସାମର୍ଥ୍ୟ ଅଛି ।'

'ତା' ହେଲେ ନିଶ୍ଚୟ ଦାନ କରିବି ।'

'ଋଷି ପ୍ରବର, ଆମେ ମଧୁ ଗୁହ୍ୟ ରହସ୍ୟ ଉଦ୍‌ଘାଟନ ।'

ଋଷି କଳା ପଡ଼ିଗଲେ । ସେ ବିଶ୍ୱାସ କରି ନ ଥିଲେ ଯେ ଇନ୍ଦ୍ର, ତାଙ୍କୁ ମଧୁବିଦ୍ୟା ଦେଇଥିବା କଥା ଅଶ୍ୱିନୀ କୁମାର ଜାଣନ୍ତି ।

'ମଧୁ—?' ଉଦାସୀନ ଭାବରେ ଦଧ୍ୟଞ୍ଚ ପଚାରିଲେ ।

'ମୁନି ଶ୍ରେଷ୍ଠ, ଇନ୍ଦ୍ର ଆପଣଙ୍କୁ ଏହି ବର ଦାନ କରିଛନ୍ତି ।'

'ଆପଣମାନେ ଜାଣିଲେ କିପରି ?'

'ପ୍ରାର୍ଥୀ କେବଳ ସେହି ବର ମାଗେ, ଯାହା ଦାତା ଦେବା-ପାଇଁ ସମର୍ଥ ।'

'କିନ୍ତୁ ଅଶ୍ୱିନୀ କୁମାର—'

'ମହର୍ଷି, ଏହାଛଡ଼ା ଆମର ଅନ୍ୟ ଅଭିଳାଷ ନାହିଁ ।'

'କିନ୍ତୁ ଆପଣ ଜାଣନ୍ତି କି—'

'ମହାଭାଗ, ଆପଣ ଆମ୍ଭମାନଙ୍କୁ ପ୍ରତିଶ୍ରୁତି ଦେଇଛନ୍ତି ଯେ ଆମର ପ୍ରାର୍ଥିତ ଅଭିଳାଷ ପୂରଣ କରିବେ ।'

'ତାହା ସତ୍ୟ' କିନ୍ତୁ ଆପଣମାନେ ଜାଣନ୍ତି କି··

'ଆମେ ଜାଣୁ ମହର୍ଷି, ଆପଣ ଇନ୍ଦ୍ରଙ୍କୁ ପ୍ରତିଶ୍ରୁତି ଦେଇଛନ୍ତି ଅନ୍ୟ କାହାରି ପାଖରେ ଆପଣ ଏ ରହସ୍ୟ ଉଦ୍‌ଘାଟନ କରିବେ ନାହିଁ । କଲେ ଆପଣଙ୍କର ମସ୍ତକ ଛିନ୍ନ ହୋଇଯିବ ।'

'ହଁ, ଆପଣମାନେ ଏହି ସର୍ତ୍ତ ବିଷୟ ଅବଗତ ହୋଇ ପୁଣି ଏହା ଜାଣିବା ପାଇଁ ଇଚ୍ଛା ପ୍ରକାଶ କରୁଛନ୍ତି ।'

'ମହର୍ଷି; ଆମେ ସ୍ୱାର୍ଥପର ନୋହୁଁ । ଆମେ ଏହାର ପ୍ରତିକାର ଜାଣୁ । କୁଶଳ ଅସ୍ତ୍ର ଚିକିତ୍ସକ ଭାବରେ ଆମେ ଆପଣଙ୍କୁ ପ୍ରତିଶ୍ରୁତି ଦେଉଛୁ ଆପଣଙ୍କର କିଛି କ୍ଷତି ହେବନାହିଁ ।'

'ଆପଣମାନେ କି ପ୍ରତିକାର କରିବେ ? ଇନ୍ଦ୍ର ବଜ୍ରର କିଣ ପ୍ରତିକାର ଅଛି ?'' ଋଷି ଗମ୍ଭୀର ଭାବରେ ପଚାରିଲେ ।

'ଅଛି ମୁନି' ଅଳ୍ପ ହସି ଶ୍ରେଷ୍ଠ ବୈଦ୍ୟ ଦ୍ୱୟ କହିବାକୁ ଲାଗିଲେ । ଏ ଏକ ସାଧାରଣ କଥା । ଆପଣଙ୍କ ମସ୍ତକକୁ କାଟି ଆମେ ଅଲଗା ରଖିଦେବୁ, ତା ସ୍ଥାନରେ ଲଗାଇବୁ ଏକ ଅଶ୍ୱର ମସ୍ତକ । ଏହି ମସ୍ତକ ହିଁ ମଧୁ ରହସ୍ୟ ଉଦ୍‌ଘାଟନ କରିବ । ଇନ୍ଦ୍ର

ବଜ୍ରରେ ଆପଣଙ୍କ ଶିର ଛେଦନ କରିବେ । କିନ୍ତୁ ସେ ଶିର ହେବ ଏହି ଅଶ୍ୱର ଶିର । ପୁଣି ସେ ସ୍ଥାନରେ ଆମେ ଆପଣଙ୍କର ପୁରୁଣା ମନୁଷ୍ୟର ମସ୍ତକକୁ ଯୋଡ଼ିଦେବୁ ।'

ଋଷି ଗମ୍ଭୀର ହୋଇ ଭାବିଗଲେ ।

'ମହର୍ଷି ଆପଣ ନିଶ୍ଚିନ୍ତ ରହନ୍ତୁ । ଆପଣଙ୍କର ସତ୍ୟ ଆମ ପାଖରେ ଓ ଇନ୍ଦ୍ରଙ୍କ ପାଖରେ ପାଳିତ ହେବ । କାରଣ ଆପଣଙ୍କର ଯେଉଁ ମୁହଁ ଇନ୍ଦ୍ରଙ୍କୁ କଥା ଦେଇଛି, ସେ ମୁହଁରେ ମଧୁ ବିଦ୍ୟାର ରହସ୍ୟ ଉଦ୍‌ଘାଟିତ ହେଉ ନାହିଁ । ଦୋଷୀ ହେବ ଅଶ୍ୱ ମସ୍ତକ, ଯାହାକୁ କି ଆପଣଙ୍କ ବେକ ଉପରେ ଲଗାଇ ଦେବୁ । ସେ ମସ୍ତକ ତା'ର ଦଣ୍ଡ ଭୋଗ କରିବ । ପୁଣି ଆପଣଙ୍କ ନିଜ ମସ୍ତକ ଆପଣ ଫେରି ପାଇବେ ।'

ଋଷି ଦେବ ବୈଦ୍ୟମାନଙ୍କ ଦକ୍ଷତା ଜାଣନ୍ତି । ସେ ଏଥିରେ ସନ୍ତୁଷ୍ଟ ହୋଇ କହିଲେ, 'ତାହାହିଁ ହେଉ ।'

(୪)

ଅଶ୍ୱିନୀ କୁମାର ମହର୍ଷି ଦଧ୍ୟଞ୍ଚଙ୍କ ମସ୍ତକକୁ ଛିନ୍ନ କରି ସେହି ସ୍ଥାନରେ ଶୀଘ୍ର ଏକ ଅଶ୍ୱର ଶିର ଜୋଡ଼ି ଦେଲେ । ଦଧ୍ୟଞ୍ଚଙ୍କର ଚେତନା ସେହିପରି ରହିଲା । ହୟଗ୍ରୀବ ଋଷି କୁଶାସନ ଉପରେ ବସି ଅଶ୍ୱିନୀ କୁମାର ଦୁହିଁଙ୍କୁ ମଧୁ ବିଦ୍ୟାର ଉପଦେଶ ଦେଲେ ।

ମଧୁ ବିଦ୍ୟାର ଉଦ୍‌ଘାଟନ ହେବା ମାତ୍ରେ ଦେବରାଜ ଇନ୍ଦ୍ର କ୍ରୋଧରେ ଜଳି ଉଠିଲେ । ତାଙ୍କର ବଜ୍ର ଅସ୍ତ୍ର ଋଷିଙ୍କ ମସ୍ତକ ପ୍ରତି ଧାବିତ ହେଲା ।

ଋଷି ଅଶ୍ୱିନୀ କୁମାରଙ୍କ ଆଡ଼କୁ ବ୍ୟଗ୍ର ଦୃଷ୍ଟିରେ ଚାହିଁ ରହିଲେ ।

"ଚିନ୍ତା କରନ୍ତୁ ନାହିଁ ମହର୍ଷି, ଆପଣ ଶୀଘ୍ର ନିଜର ମସ୍ତକ ଫେରି ପାଇବେ ।"

ବଜ୍ର ପ୍ରହାରରେ ଋଷିଙ୍କର ଅଶ୍ୱମୁଖ ଛିନ୍ନ ହୋଇଗଲା ଏବଂ ବହୁତ ଦୂର ପର୍ବତରେ ଥିବା ଶର୍ପଣାବୃତ ସରୋବରରେ ଯାଇ ପଡ଼ିଲା । ସେହିଦିନଠାରୁ ଏହି ସ୍ଥାନ ହେଲା ଶର୍ଯ୍ୟାବତ ତୀର୍ଥ । ଋଷିଙ୍କର ଶରୀର ଭୂମିରେ ପଡ଼ିରହିଲା ।

ଅଶ୍ୱିନୀ କୁମାର ଅବିଳମ୍ବେ ଋଷିଙ୍କର ଦେହରେ ତାଙ୍କର ମସ୍ତକ ଯୋଡ଼ିଦେଲେ ଓ ଋଷି ସେମାନଙ୍କ ସହିତ ଆଳାପ କରିବାକୁ ଲାଗିଲେ, ଯେପରିକି ତାଙ୍କର କିଛି ହୋଇନାହିଁ ।

ଅଶ୍ୱିନୀ କୁମାରଙ୍କର ଅଦ୍ଭୁତ ଶଲ୍ୟ କୌଶଳରେ ସମଗ୍ର ବିଶ୍ୱ ଚକିତ ହୋଇଗଲା ।



# ଆଖି

ଶ୍ରୀ ନାରାୟଣ ଦ୍ଧେଷେଠ୍

ମେଡ଼ିକାଲ କଲେଜର ରକ୍ତଭଣ୍ଡାର ବାରଣ୍ଡାରେ ସେଇ ବୁଢ଼ାଟାକୁ ଅନେକ ଦିନ ଦେଖେଁ । ସପ୍ତାହରେ ଅନ୍ତତଃ ଥରେ । ବୟସ ଯାହା ଅନୁମାନ କରୁଥିଲି, ତାଠୁଁ ନିଶ୍ଚିତ ଭାବେ କମ୍ ହେବ । କିନ୍ତୁ ମନର କୃପାରେ ଯେ ବୁଢ଼ାର ବୟସ ଆହୁରି ବଢି ଯାଇଛି, କଥାଟି ସ୍ପଷ୍ଟ ବାରିହୋଇ ପଡୁଥାଏ ।

ସେଦିନ ବୁଢ଼ା ବୋଧହୁଏ ରକ୍ତଦାନ କରିଥିଲା । ରକ୍ତ ଭଣ୍ଡାରର ବାରଣ୍ଡା ଉପରେ ପଡ଼ିଥିବା କାଠ ବେଞ୍ଚ ଉପରେ ବୁଢ଼ା ଯେମିତି ବସିଥାଏ, ଜଣାପଡୁଥାଏ, ହଠାତ୍ ଯେମିତି ମରିଯିବ । କାଠ ବେଞ୍ଚର ଗୋଟିଏ ପଟକୁ ଢଳି ପଡ଼ିଥାଏ । ରକ୍ତଭଣ୍ଡାର ଭିତରକୁ ନ ଯାଇ ସେଇ ବେଞ୍ଚ ପାଖରେ ବୁଢ଼ାର ଦେହକୁ ସାମାନ୍ୟ ହଲେଇ ଦେଲି । ବୁଢ଼ା ଆଖି ମେଲିଲା ଧୀରେ ଧୀରେ·· ମୋ ମୁହଁକୁ ବଲ ବଲ କରି ଅନେଇଲା । ଖୁବ୍ ଜୋରରେ ମଦ ପିଇଥିବା ଲୋକର ଆଖି ଭଳି ଆଖି ଗୁଡ଼ିକ ଗାଢ଼ ଲାଲ ଦିଶୁଛି । ବାରମ୍ବାର ପିଲେଇ ପଡ଼ିଥିବା ଦଦରା କୁଣ୍ଡା ଦେହରେ ଝାଳ ନେସି ହୋଇଯାଇଛି । ବୁଢ଼ାକୁ ଠିକ୍ ଭାବେ ବସେଇ ଦେଇ ପଚାରିଲି ।

କେମିତି ଲାଗୁଛି ?

ଅନେଇ ଅନେଇ ବୁଢ଼ା କହିଲା, ହୁଁ···ହୁଁ ହୁଁ···ଭଲ ଲାଗିଲାଣି । ଧୀରେ ଧୀରେ ଭଲ ଲାଗିଯିବ··· ।

ଟିକେ ବସିଯା ! ଝିମ୍ ଝିମ୍ ଲାଗୁଥିବ ।

ବୁଢ଼ା ଉଠି ଠିଆ ହେଲା । ଯେମିତି ବଡ଼ କଷ୍ଟରେ ଠିଆ ହୋଇ କହିଲା, କିଛି ହେବନି ବାବୁ । ବହୁତ ସମୟ ବସି ପଡ଼ିଲା । ତେଣେ କେତେ କାମ··· ସୁଧ ଦେବ···କରଜ ଟଙ୍କା···

ମୁଁ କିଛି କହିବା ଆଗରୁ ବୁଢ଼ା ବୋଧହୁଏ ମୋର ଅଜାଣତରେ ମୋତେ ହାତଯୋଡ଼ି କୁଆଡେ ଚାଲିଯାଇଥିଲା ।

ତାପରେ କିଛିଦିନ ପରେ ବୁଢ଼ାକୁ ମୋ ଘର ଆଗରେ ଦେଖିଲି । ବୁଢ଼ା ହାତରେ ପୁରୁଣା ଖବର କାଗଜ ଗୋଛାଏ । ବୁଢ଼ା ଥର ଥର ପଚାରିଲା । ପୁରୁଣା ଖବର କାଗଜ ଅଛି ବାବୁ ? ବିକିବେ ?

ବୁଢ଼ାର ମୁହଁକୁ ଦେଖିଲି । ପୁରୁଣା ଖବର କାଗଜ କଥା କିଛି ନ କହି ପଚାରିଲି, ପୁରୁଣା ଖବର କାଗଜ ନେଇ କଣ କରୁଛ ବୁଢ଼ା ?

ସେମିତି କିଛି ନୁହେଁ ବାବୁ···ଠୁଙ୍ଗା ତିଆରିକରି ବିକେ । ବଜାରରେ ବିକିଲେ ଦୁଇ ଚାରି ପଇସା ମିଳିଯାଏ ।

ତମେ କେବେଠୁ ଏ ଧନ୍ଦା କଲଣି ? ତମକୁ ତ ପ୍ରାୟ ପ୍ରତ୍ୟେକ ହପ୍ତାରେ ରକ୍ତଭଣ୍ଡାର ପାଖେ ଦେଖୁଛି··

ବୁଡା କହିଲା, ଏଇ କେତେଦିନ ହେବ । ଆଜିତ ସକାଳେ ବାବୁ ରକ୍ତଭଣ୍ଡାରରୁ ଫେରିଛି ।

ଆଚ୍ଛା ବୁଢ଼ା, ଏଇ ବୟସରେ ଏମିତି ରକ୍ତଦାନ କଲେ, ତମର ଦେହ··

ବୁଡା ହସିଲା··· କେମିତି ଏକା ଶୋଷ ହସ, କହିଲା ନକଲେ ମରିଯିବି ବାବୁ ।

କରଜ ଟଙ୍କା ଶୁଝୁଛି । ସବୁ ହପ୍ତାରେ ସୁଧ ଦେବାକୁ ପଡ଼େ । ମହାଜନ ରକ୍ତ ନଏନି । ସୁଧ ନଏ—

କିଛି ବୁଝିପାରିଲି ନାହିଁ । ବୁଡା ପୁଣି କହିଲା, ପୁରୁଣା କାଗଜ ଥିଲେ ଦେବେ ବାବୁ····ତେଣେ ବହୁତ ଦ୍ୱାର ବୁଲିବାକୁ ପଡ଼ିବ ।

ତମ କରଜ ଟଙ୍କା···ସୁଧ···ମୋଟେ ବୁଝିପାରିଲି ନାହିଁ । ଏମିତି ଭିକ୍ଷାଦାନ ପଇସାରେ କେତେ କରଜ ଶୁଝିବ ?

ପୁଅ ବଡ଼ଲୋକ ହେବ ଘର ଖଣ୍ଡକ ବନ୍ଧକ ରଖିଥିଲି । ସବୁ ବୁଡ଼ିଗଲା । ହାତ ଉଧାର ଯାହା ଆଣିଥିଲି, ସବୁ କରଜ ଟଙ୍କା ଅଛି । ମହାଜନକୁ ଖାଲି ସବୁ ମସ୍ତାହରେ ସୁଧ ଦଏଁ । ତା ଉପରେ ଜମି ଖଣ୍ଡିକ ଲାଗି ଗୁରବର୍ଷ ହେବ କେସ୍ ଲାଗିଛି ।

ଆଗ୍ରହ ସହକାରେ ପଚାରିଲି, କେସ୍ ସରିନି ? ସବୁତ ଯାଇଛି । କେସ୍‌ଟା ପିଛାରେ କାହିଁକି ଧାଇଁଛ ?

ମୁହଁର କୁଞ୍ଚିତ ଚମଡ଼ାରେ ହୋହଲି ହୋହଲି ଖସିପଡୁଥିବା ଝାଳକୁ ସେଇ ମସିଆ ଲୁଗାରେ ପୋଛୁ ପୋଛୁ ବୁଢା କହିଲା, ଆଶା ତ ବାବୁ । ଜମି ଖଣ୍ଡିକ ମିଳିଗଲେ, ତାକୁ ହିଁ ବିକି ଦିଅନ୍ତି । ଆଶାରେ ତ ମଣିଷ ମରେ । ମୁଁ ସେଥିରେ ହିଁ ମରୁଛି ।

କେସ୍ ସରିନି ?

ମୋ ପାଇଁ କେସ୍ ସରିନି ବାବୁ । ଖାଲି ତାରିଖ । ତାରିଖ ଖାଲି ଘୁଞ୍ଚୁଛି । ଆଜିକି ତାରିଖ ଥିଲା । ସାହେବ ପୁଣି ଆଉ ଗୋଟିଏ ତାରିଖ ଦେଇଛନ୍ତି । ଆଉ ତାରିଖକୁ କୁଆଡ଼େ କେସ୍ ଫଇସଲା ହୋଇଯିବ ।

ବୁଢ଼ାର ସେଇ ଆହତ ଅଭିମାନ ସ୍ୱର—ଝଙ୍କାରରେ ମୋର ଦୟା ଆସି ଯାଇଥିଲା । ଉଗ୍ର ଆଗ୍ରହରେ ପଚାରିଲି, ତମ ଗାଁ କେଉଁଠି ବୁଢ଼ା ?

ବୁଢା ତାର ଯେଉଁ ଗାଁ ନାଁଟି କହିଲା ମୁଁ ଆଶ୍ଚର୍ଯ୍ୟରେ କମ୍ପିଉଠି ପଡ଼ିଗଲି । ତା'ପରେ ମୋର ଶତ ଅନୁରୋଧ ସତ୍ତ୍ୱେ ବୁଢ଼ା ମୋ ଘରେ ଆଉ ନ ରହି ଉଠି ଚାଲିଗଲା ।

( ଦୁଇ )

ମଝିରେ ମଝିରେ ଖବର ନେବା ସତ୍ତ୍ୱେ ବୁଢ଼ାର ଆଉ କୌଣସି ଖବର ପାଇ ନଥିଲି । କେମିତି ଏକ ଅପରାଧବୋଧର ଗ୍ଲାନିରେ

ମୋର ମନ ଭାରି ହୋଇ ଉଠୁଥିଲା । ମୋର ଅନୁପସ୍ଥିତିବେଳେ ହୁଏତ ରକ୍ତଦାନ ଟଙ୍କାରେ ବୁଢ଼ା କରଜ ଶୁଝୁଥିବ ।

ବୁଢ଼ାର ଗାଁର ନାଁଟି ଶୁଣିବା ପରେ ବୁଢ଼ାର ଅସଲ ରୂପଟି ସମ୍ପର୍କରେ ମୋ ଆଖି ଆଗରୁ ଅନ୍ଧକାର ପରଦାଟି ଉନ୍ମୋଚିତ ହୋଇ-ଥିଲା । ସେଇ ଗାଁରେ ମୋର ବାପା ବି.ଡି.ଓ ଥିଲାବେଳେ ସଦାନନ୍ଦ ପଞ୍ଚାୟତ ପ୍ରାଇମେରି ସ୍କୁଲର ଶିକ୍ଷକ ଥିଲେ । ତାଙ୍କ ପୁଅଟି ସେତେବେଳେ ମୋର ସହପାଠୀ । ଖୁବ ଭଲ ପଢୁଥିଲା । ସ୍ତ୍ରୀ ଅନେକ ଦିନୁ ନଥିଲେ । ପୁଅ ମାଟ୍ରିକ ପାଶ୍ କରିବା ପରେ ବୁଢ଼ାର ଇଚ୍ଛା ଥାଏ ପୁଅକୁ ମେଡିକାଲରେ ପଢ଼େଇବାପାଇଁ । ତାକୁ ସେଥିପାଇଁ ଆଇ.ଏସ.ସି. ରେ ଭର୍ତ୍ତି କରିଥିଲେ । କିନ୍ତୁ ଆଶା କରିବା ଓ ବାସ୍ତବତା ଭିତରେ ଅନେକ ତଫାତ୍ ଥାଏ । ଟଙ୍କା ଯୋଗାଡ଼ରେ ସଦାନନ୍ଦ ସବୁବେଳେ ଚିନ୍ତିତ ରହନ୍ତି । ଏ ମଧ୍ୟରେ ବାପାଙ୍କ ବଦଳି ହୋଇଯିବା ପରେ ସେଇଦିନଠୁ ମୁଁ ସଦାନନ୍ଦଙ୍କୁ ଦେଖି ନଥିଲି ।

ଯେତେବେଳେ ଦେଖିଲି, ତାଙ୍କର ସବୁ ସରିଥିଲା ।

କୌଣସି କାରଣ ଯୋଗୁଁ ମାଷ୍ଟର ଚାକିରି ଛାଡ଼ିଲା ପରେ ଖୁବ୍ ଦୁଃଖ କଷ୍ଟରେ ପୁଅକୁ ମେଡ଼ିକାଲରେ ପଢ଼େଇଥିଲେ । ଏଥିପାଇଁ ଦିନ ରାତି ତାଙ୍କୁ ଖଟିବାକୁ ପଡ଼େ । ସକାଳ ଓଳି ଗୋଟିଏ ଚାଉଳ କଳରେ କିରାଣୀ କାମ ପାଇଥିଲେ । କିନ୍ତୁ ଚାଉଳ ବସ୍ତା ଗଣିବାରେ ତାଙ୍କର ବାରମ୍ବାର ଭୁଲ ହେଲା । ଯୋଗାଣ ବିଭାଗର ତଦାରଖ ବେଳେ ଚାଉଳ ବସ୍ତା, ତମ୍ବୁ ବସ୍ତା ଓ ବାଲିବସ୍ତାଗୁଡ଼ିକୁ ପୃଥକ୍ ପୃଥକ୍ କରି ଚିହ୍ନାଇ ଦେବାରେ, ଚାକିରିଟି ତାଙ୍କର ଯାଇଥିଲା । ସେତେବେଳେ ପୁଅ ସୁନୀଲର ହାଉସ୍ ସର୍ଜନସିପ୍ । ସଦାନନ୍ଦ ଜମି ଖଣ୍ଡିକ ବନ୍ଧକ ରଖି ବର୍ଷେ ଚଳେଇ ନେଲେ ।

ସୁନୀଲ ସବୁ ଛୁଟିରେ ବାପା ପାଖକୁ ଯାଏ । ଏବେ ଏବେ ଖୁବ୍ ଗମ୍ଭୀର ଜଣାପଡ଼େ । ବାପ ପାଖରେ ଦିନେ ଦୁଇଦିନ ରହି ପୁଣି ଚାଲିଆସେ । ପୁଅ ଭିତରେ ଯେ ଗୋଟାଏ ପରିବର୍ତ୍ତନର ନିଷିଦ୍ଧ ଗୋପନୀୟତା ଅଜାଡ଼ି ହୋଇ ପଡ଼ୁଛି, ସଦାନନ୍ଦ ଲକ୍ଷ୍ୟକଲେ ।

ମେଡ଼ିକାଲ କଲେଜ—ସେଇଟି ସବୁଦିନ ବସନ୍ତ ଅଜାଡ଼ି ହୋଇଯିବ । ସୁଶୀଲ ଆଜି କେଉଁ ସହପାଠିନୀ ବା ନର୍ସର ପ୍ରେମରେ ପଡ଼ିନ ତ ?

ହଁ, ସେ ସବୁ କିଛି ହୋଇ ନଥିଲା । ସୁଶୀଲ ଭିତରେ କିଛି ପରିବର୍ତ୍ତନ ହୋଇଥିଲା । ସ୍କଲାସିପ କଥା ପଢ଼ିବାରୁ ଚିନ୍ତା କରିଲା । ଏ ଦେଶରେ ସ୍କଲାସିପ କାହିଁ ବାପା ? ଆମର ବ୍ୟାଙ୍କ କଏ ଅଛି ! କେଉଁଠି ବା ପ୍ରାଇଭେଟ କ୍ଲିନିକ ଟିଏ କଲେ ଚଳିବ ? ସଦାନନ୍ଦ ଚୁପ୍ ପଡ଼ିଗଲେ । ଖାଲି ପଚାରିଲେ, କ'ଣ କରିବୁ ବୋଲି ଭାବୁଛୁ ?

ଆମେରିକାରେ ଗୋଟିଏ ମେଡ଼ିକାଲ କଲେଜରେ ମୋର ସିଟ୍ ହୋଇଛି ।

ସଦାନନ୍ଦ କିଛି ବୁଝି ପାରିଲେ ନାହିଁ । "ଆମେରିକା...ସେତ ବିଲାତ ଦେଶ । କେତେ ଟଙ୍କା ଲାଗିବ... ।"

'ବେଶି ନୁହେଁ ବାପା । ଖାଲି ଯିବାପାଇଁ ଆଉ ପ୍ରଥମରେ ଆଡ଼ଜଷ୍ଟ କରିବା ଲାଗି ଦଶ ହଜାର ।' ସଦାନନ୍ଦଙ୍କ ପାଟି ଖନ ମାରିଗଲା... ଏତେ ଟଙ୍କା । ମୁଁ...

ଏ ଘର ଖଣ୍ଡିକ ବନ୍ଧା ରଖିଦିଅ । ମୁଁ ଫେରି ଆସିଲେ ମୁକୁଳାଇବା...

ସଦାନନ୍ଦ କିଛି କୂଳ କିନାରା ପାଇ ନଥିଲେ । ଗରିବ ବାପ । ପୁଅକୁ ବଡ଼ କରିବାର ଯେଉଁ ସ୍ୱପ୍ନ, ସେ ସ୍ୱପ୍ନର ଫୁଲର ପାଖୁଡ଼ାରେ ଅସହାୟତା ନାମକ ଏକ ଦହନ ଯନ୍ତ୍ରଣାର ବାସ୍ନା ମଧ୍ୟ ଥାଏ । ସେ ତୀବ୍ର ବାସ୍ନାର ଆଘ୍ରାଣରେ ସଦାନନ୍ଦ ରୁଦ୍ଧଶ୍ୱାସ ହୋଇଗଲେ ।

ତଥାପି, ତା ଆରଦିନ କେବଳ ମାତ୍ର ଘର ଖଣ୍ଡିକ ବନ୍ଧା ରଖି ହାତଉଧାରି କରି ସୁଶୀଲ ହାତରେ ସାତ ହଜାର ଟଙ୍କା ଦେଇଥିଲେ । କିନ୍ତୁ ଲକ୍ଷ୍ୟ କରିଥିଲେ ଯେ, ଟଙ୍କାର ପରିମାଣ କମି ଯିବାରେ ସୁଶୀଲ ମୋଟେ ଖୁସି ନଥିଲା ।

ସୁମନ୍ତ ଆମେରିକା ଗଲାପରେ ସଦାନନ୍ଦ ଖାଲି ଚିଠି ଦୁ'ଖଣ୍ଡ ପାଇଥିଲେ । ତା'ପରେ ତିନି ବର୍ଷ ଚାଲିଗଲା, କୌଣସି ଖବର ନାହିଁ । ଧୀରେ ଧୀରେ ବନ୍ଧାଥିବା ଘର ଖଣ୍ଡିକ ଚାଲିଗଲା । ହାତ ଉଧାର ଆଣିଥିବା କରଜ ସୁଝିବାପାଇଁ ନିରାଶ୍ରୟ ଭାବେ ସଦାନନ୍ଦ ସହରକୁ ଚାଲି ଆସିଲେ ।

ରକ୍ତ ଦେଇ, ଠୁଙ୍ଗା ବିକି, କେତେବେଳେ କମିଶନ ବା ଆଉ କିଛି କାମ କରି ପୁଧ ଦେଉଥିଲେ । ପୂର୍ବରୁ ଗୋଟାଏ ଏକର ଜମି ପାଇଁ ଲାଗିଥିବା କେସ୍‌ରେ ଯାହେ ଜିତିଯିବେ ଭାବି ଓକିଲଙ୍କୁ କିଛି କିଛି ଫିସ୍ ଦେଉଥିଲେ ।

ତଥାପି କେସ୍ ତାରିଖର ଶେଷ ନଥିଲା । ଖାଲି ତାରିଖ ।

ବୁଢ଼ାଙ୍କୁ ପୁଣି ଦିନେ ରକ୍ତଭଣ୍ଡାର ଆଗରେ ଦେଖି ମୁଁ ପ୍ରଥମେ ପ୍ରଣିପାତ କରିଥିଲି । ଜବରଦସ୍ତ ଭାବେ ହାତରେ କିଛି ଟଙ୍କା ଧରେଇଦେଇ ଜୋର କରି ଟାଣି ଆଣିଥିଲି ରକ୍ତଭଣ୍ଡାର ବାହାରକୁ । ମୋର କୌଣସି ଅନୁନୟ ସେ ରଖି ନଥିଲେ । ଅଥଚ ମୋ ବସାରେ ସେଦିନ ମୋ ହାତକୁ ଯେଉଁ କାଗଜଟି ବଢ଼େଇ ଦେଇଥିଲେ, ସେଥିରେ ସେ ଦସ୍ତଖତ କରିଥିଲେ । ଲେଖିଥିଲେ, ସେ ମଲାପରେ ତାଙ୍କର ମୃତଶରୀରକୁ ଜନକଲ୍ୟାଣ ଉଦ୍ଦେଶ୍ୟରେ ମେଡ଼ିକାଲ୍ କଲେଜକୁ ଦାନ କରିବା ପାଇଁ ।

ତାପରେ ପୁଣି ଅଚାନକ ଭାବେ ବୁଢ଼ା ମୋ ପାଖରୁ କିଛିଦିନ ପାଇଁ ଅନ୍ତର୍ଦ୍ଧାନ ହୋଇଗଲେ ।

ବୁଢ଼ା ଗଲାପରେ, ସେ ଯେଉଁ ଜାଗାରେ ବସିଥିଲେ, ସେଠାରେ ମୁଁ ଅନୁଭବ କରୁଥିଲି ଏକ ମର୍ମଦାହୀ ଶୂନ୍ୟତା··· ସେଇ ବାତାବରଣରେ ଭରି ରହିଥିଲା ଶୂନ୍ୟତାର ଗ୍ରୀଷ୍ମଋତୁ ।

(ତିନି)

ସୁମନ୍ତ ଭାରତ ଆସିବାର ଖବର ପାଇଥିଲି ତା'ର ଚିଠିରୁ । ବୁଢ଼ାଙ୍କୁ ଖବରଟି ଦେଇ, ଏକ ଭଙ୍ଗାମାଡ଼କୁ ଯୋଡ଼ିବାର ପ୍ରୟାସ ମୋର

ସଫଳ ହୋଇ ନଥିଲା । ସାର୍ଦ୍ଧନ ଧର ତାଙ୍କର ଖବର ପାଇ ନଥିଲେ । ସୁମାଳର ଚିଠି ପରେ, ମୋ'ର ଠିକଣାରେ ପୁଣି ତା'ଙ୍କ ସ୍ତ୍ରୀ ପାଖରୁ ଆସିଥିବା ଲମ୍ବା ଟେଲିଗ୍ରାମଟିକୁ ବିଶ୍ୱାସ କରିପାରିଲି ନାହିଁ । ଅବିଶ୍ୱାସନୀୟ ହେଲେ ମଧ୍ୟ ଏକ ମର୍ମନ୍ତୁଦ ଟେଲିଗ୍ରାମ । ସୁମାଳର ସ୍ତ୍ରୀ ଲେଖିଥିଲେ—ରଉରକେଲରୁ ଘରକୁ ଆସିବାବେଳେ କାରର ଟାୟାରଡ୍ ଛିଣ୍ଡି ଯାଇ କାର୍‌ଟି ଦୁର୍ଘଟଣାଗ୍ରସ୍ତ ହୋଇଛି । ସୁମାଳ ବଞ୍ଚି-ଯାଇଥିଲେ ମଧ୍ୟ ମୁହଁରେ ଜୋର ଆଘାତ ହୋଇଥିବା ଯୋଗୁଁ ଆଖି-ଯୋଡ଼ିକ ନଷ୍ଟ ହୋଇଯାଇଛି । ତୁରନ୍ତ ଅପରେସନ୍ ନକଲେ ସାରା-ଜୀବନ ଅନ୍ଧ ହୋଇ ରହିଯାଇପାରେ । ଆଖି ଯୋଡ଼ିକ କାଢି ନଦେଲେ, ତା'ଙ୍କ ବଞ୍ଚିବା ମଧ୍ୟ ମୁସ୍କିଲ ହୋଇପଡ଼ିବ ।

ଏକ ଦାରୁଣ ଧକ୍‌କାରେ କିଛି ସମୟ ନୀରବ ହୋଇଗଲି । ସମୟ ପ୍ରତିଶୋଧ ନିଏ । ଖୁବ୍ ନିର୍ମମ ପ୍ରତିଶୋଧ ।

କେଉଁ ଏକ ଅଜଣା ଇଙ୍ଗିତରେ ବୁଢ଼ାଙ୍କୁ ଏ ଖବର ଦେବାଲାଗି ମନ ବ୍ୟାକୁଳ ହୋଇ ଉଠିଲା । ବ୍ୟସ୍ତଭାବେ ରକ୍ତଭଣ୍ଡାର ପାଖକୁ ଗଲି । ସେଇଠି ସେ ନଥିଲେ । ଆଃ…ଯା'ହେଉ ବୁଢ଼ା ଆଜି ରକ୍ତଦାନ କରିବାକୁ ଆସିନାହିଁ । କେମିତି ପୁଣି ମନେ ପଡ଼ିଲା କଚେରୀ କଥା ବୁଢ଼ାର କାଳେ ତାରିଖ ଥିବ ।

କଚେରୀହତା ଭିତରକୁ ଗଲାବେଳକୁ ସେଇ ଅଶ୍ୱତ୍ଥ ଗଛତଳେ ଦଳେ ଲୋକ ରୁଣ୍ଡ ହୋଇଛନ୍ତି । ଭିଡ଼ ଭିତରକୁ ପଶି, ତଳେ ଚିତ ହୋଇ ପଡ଼ିଥିବା ଯେଉଁ ଲୋକଟିକୁ ଦେଖିଲି, ମୋଟେ ବିଶ୍ୱାସ କରି ହେଲାନାହିଁ । ସେଇ ବୁଢା ସଦାନନ୍ଦ । ମୁଣ୍ଡଫାଟି ଅଳ୍ପ ରକ୍ତ ବି ବାହାରି ପଡ଼ିଛି । ଫାଟିବାଟେ ଝିଲକାଏ ରକ୍ତ । ଦେହଭିତରେ ଜୀବନର ସଂଧାନ ସଂପର୍କରେ ନାଡ଼ି ପରୀକ୍ଷା କଲାବେଳକୁ ବୁଢ଼ା ମରିସାରିଥିଲେ । କେହି ଜଣେ ଓକିଲଙ୍କ ମୁନ୍‌ସୀ ଛିଡ଼ା ହୋଇଥାନ୍ତି ।

ଏକ ଶ୍ୱାସରୁଦ୍ଧ କଣ୍ଠରେ ପଚାରିଲି, କ'ଣ ହେଲା ?

ମୁନ୍‌ସୀ ଜଣକ କହିଲେ—ଏ ବୁଢାଟି ବାବୁ ବହୁବର୍ଷ ହେଲା ଏକରେ ଜମି ମାମଲାରେ କଚେରୀ ଧାଉଁଥିଲା । ବହୁତ ତାରିଖ ବଦଳ

ଧାଇଁଲ । ଆଜ ଶେଷ ଇଚ୍ଛାର ହୋଇ ଶୁଣାଣି ହେବା କଥା । ଅପରପକ୍ଷ ନ ଆସିବାକୁ ପୁଣି ତାରଖ ହୋଇଗଲ । ସେଇ ତାରଖ କଥା ଶୁଣି ବୁଢ଼ା କଚେରୀ ବାରଣ୍ଡାରୁ ଓହ୍ଲାଇଲାବେଳେ ତଳେ ପଡ଼ି ମରିଗଲା··· ।

ମୋ ଆଖିରୁ ଲୁହ ବୋଧହୁଏ ଝରୁ ନ ଥିଲା ।

ଖାଲି ଦୁଃଖ ଲାଗୁଥିଲା, ଏକ ଚକ୍ଷୁଷ୍ମାନ ବାପକୁ ଏକ ଅନ୍ଧ-ପୁଅର କାହାଣୀ ଶୁଣେଇ ପାରିଲି ନାହିଁ ।

ଏକ ଦୀର୍ଘଶ୍ୱାସ ନେଇ ଶବକୁ ମୋ ଗାଡ଼ିରେ ଲଦିଲି ।

ସେଇଦିନ, ପୁଣି ପ୍ରସ୍ତୁତ ହେବାକୁ ପଡ଼ିଲା ସୁନୀଲର ଆଖି ଅପରେସନ ପାଇଁ । ଏକ ଗ୍ଳାନିଧର୍ଷିତ ମନ ଭିତରେ ଆନନ୍ଦର ଖାଲି ନିଶ୍ୱାସ ବନ୍ଦ ହୁଏ ଥାଏ—ସୁନୀଲର ଆଖି ଅପରେସନ୍ ସଫଳ ହୋଇଛି । ଦୀର୍ଘ ସାତଦିନ ପରେ ସୁନୀଲର ଆଖିପଟି ଖୋଲିବା ପରେ; ପ୍ରଥମେ ଆଲୋକର ବନ୍ୟାରେ ସେ କିଛି ଦେଖିପାରିଲା ନାହିଁ ।

ଧୀରେ ଧୀରେ ସେ ଚାହିଁ ପାରିଲା ବେଳକୁ, ତା ଆଗରେ ମୁଁ ଛିଡ଼ାହୋଇ ତାର ନୂତନ ଦୃଷ୍ଟି କ୍ଷମ ଆଖିକୁ ଦେଖୁଥିଲି । ସେ ଆଖିରେ ଯେମିତି ଅନେକ ଯୁଗର ଅବହେଳାର ଯନ୍ତ୍ରଣା ଖୁନ୍ଦି ଖୁନ୍ଦି ହୋଇ ଭରି ରହିଛି । ନିଷ୍କରୁଣ ଭାବେ ହସିଦେଲି । ସୁନୀଲ ମୋତେ କୃତଜ୍ଞତା ଜଣାଇଥିଲା । 'ତୋ ପାଇଁ ପୃଥିବୀରେ ଦୁନିଆକୁ ଦେଖିପାରୁଛି, କିନ୍ତୁ ମୋ ମୁହଁରେ ଏ ପ୍ରତିରୋପିତ ହୋଇଥିବା ନୂଆ ଆଖିର ଦାତା ଉଦ୍ଦେଶ୍ୟରେ ମୁଁ କୋଟି ନମସ୍କାର କରୁଛି··· ।'

ମୁଁ ମନାକଲି । 'ନା, ନା, ତାଙ୍କୁ ନମସ୍କାର କରନା । ସେ ଦେବତା ନୁହନ୍ତି । ତାଙ୍କର ଗୋଟେ କଥା ରଖିବୁ । ଗୁଡ଼ାଏ ପାଠ ପଢ଼ି ଭଲ ରହିଲେ, ଭଲ ପିନ୍ଧିଲେ, ବିଦେଶରେ ରହିଲେ, କେହି କେବେ ବଡଲୋକ ହୋଇଯାଏ ନାହିଁ । ମଣିଷକୁ ମଣିଷଭାବେ ଦେଖିଲେ ଲୋକ ବଡ ହୋଇଥାଏ ।

ଏକ ଅବୋଧ ପୁରୁଷ ଭଳି ସୁନୀଲ ମୋ ମୁହଁକୁ ଅନେଇଥାଏ ।

ମୁଁ ସେଦିନ ତାକୁ ପ୍ରତିଶ୍ରୁତି ଦେଇଥିଲି ଆଖି ଦାନ କରିଥିବା ଲୋକଟିର ଫଟୋ ଦେଖାଇବା ପାଇଁ ।

ହସ୍ପିଟାଲରୁ ମୋ ବସାକୁ ଆସିବାବେଳେ, ପୁଣିଥରେ ଭକ୍ତ ଭଣ୍ଡାରର ସେଇ ବେଞ୍ଚଟାକୁ ଦେଖୁଥାଏଁ । ଖାଲି ପଡ଼ିଥିଲା ।

ମୋ ବସାରେ ଯେଉଁ ଫଟୋଟି ସୁନୀଲକୁ ଦେଖାଇଲି, ତା'ର ମୁହଁ ବିବର୍ଣ୍ଣ ହୋଇଗଲା । ଫଟୋଟି ବୁଢ଼ା ସଦାନନ୍ଦଙ୍କ ମଲା ଅବସ୍ଥାର ଏକ ନିର୍ବେଦ ଫଟୋ । ପାଟି ଆଁ ହୋଇଯାଇଛି । ସେଇ ଭିତରେ ଲୁଚି ରହିଥିଲା ଏକ ମୃତମନର ବିପୁଳ ଆର୍ତ୍ତନାଦ । ତଥାପି କେଉଁ ଏକ ଦିବ୍ୟଜ୍ୟୋତି ଶୁଭ୍ରତା ଆବୋରି ରହିଥିଲା ସେଇ ମୃତ ମୁଖମଣ୍ଡଳ ଉପରେ ।

ସୁନୀଲ ପୁଣିଥରେ ଦେଖିଲା — ସଦାନନ୍ଦଙ୍କ ଦେହରେ ଜୀବନ ଥିଲାବେଳେ ସେ ଦୃଷ୍ଟିହୀନ ଥିଲା । ଦୃଷ୍ଟିମାନ ହେଲାବେଳକୁ ସଦାନନ୍ଦଙ୍କ ଆଖି ବନ୍ଦ ହୋଇଯାଇଛି ।

ସୁନୀଲ, କୌଣସି ଏକ ବନ୍ୟ ହିଂସ୍ରତାର ଅଜ୍ଞାତ ଭୟରେ ଶିଶୁଙ୍କ ଭଳି କଇଁ କଇଁ ହୋଇ କାନ୍ଦୁଥିଲା ।



# ଶେଷ ମୁହୂର୍ତ୍ତ

ଡକ୍ଟର ଶଶିନାରାୟଣ ମହାପାତ୍ର ଏମ୍. ଡ.

ବୈଜ୍ଞାନିକ ଆର୍କିମିଡ଼ସଙ୍କ ନାମ ପୃଥିବୀରେ କାହାରିକୁ ଅଜଣା ନୁହେଁ । ଗଣିତଶାସ୍ତ୍ରକୁ ଏହି ମହାପୁରୁଷଙ୍କ ଦାନ ଅତୁଳନୀୟ । ତାଙ୍କ ସମୟରେ ସିସିଲିର ରାଜା ହିରୋଙ୍କ ବନ୍ଧୁତ୍ୱ ଓ ସାହଚର୍ଯ୍ୟ ସାହାଯ୍ୟରେ ସେ ଅନେକ ବସ୍ତୁପୁଞ୍ଜର ଆବିଷ୍କାର କରିଯାଇଛନ୍ତି, ଯାହା ଆଜିର ଯାନ୍ତ୍ରିକ ସଭ୍ୟତାର ମୂଳଭିତ୍ତି ସ୍ୱରୂପ ହୋଇ ରହିଛି । ଏହିପରି ବୈଜ୍ଞାନିକ ତାଙ୍କ ସାଧନାରେ ଏତେ ନିମଗ୍ନ ଥାଆନ୍ତି ଯେ, ନିଜରଘର ସମାଜ, ରାଷ୍ଟ୍ର କାହାରି ଖବର ରଖିବା ନିମନ୍ତେ ସମୟ ତାଙ୍କର ନଥାଏ । ଏଥିପାଇଁ ସମୟେ ସମୟରେ ତାଙ୍କୁ ଅନେକ ବିପଦରେ ପଡ଼ିବାକୁ ହୋଇଛି । କିନ୍ତୁ ରାଜା ହିରୋଙ୍କ ଭଳି ବନ୍ଧୁଙ୍କ ସାହାଯ୍ୟରେ ସେ ବିପଦରୁ ଉଦ୍ଧାର ପାଆନ୍ତି । ସେହିପରି ରାଜା ହିରୋ ମଧ୍ୟ ତାଙ୍କ ବୈଜ୍ଞାନିକ ବୁଦ୍ଧି ଓ କୌଶଳ ସାହାଯ୍ୟରେ ବହୁବାର ଆତ୍ମରକ୍ଷା କରିପାରିଥିଲେ । ଏତେ ବଡ଼ ବୈଜ୍ଞାନିକ ଯାହାଙ୍କ ଦାନ ଜଗତପାଇଁ ଅସୀମ, ତାଙ୍କ ଜୀବନର ଶେଷ ମୁହୂର୍ତ୍ତ ଯେ କେତେ କରୁଣମୟ ଥିଲା ଭାବିଲେ ଲୋମମୂଳ ଟାଙ୍କୁରି ଉଠେ ।

ସେ ସମୟରେ ରୋମାନ, ଗ୍ରୀକ୍ ଓ କାର୍ଥେଜବାସୀଙ୍କ ମଧ୍ୟରେ ବିବାଦ ଏବଂ ଯୁଦ୍ଧପ୍ରାୟ ଲାଗି ରହିଥିଲା । ରାଜା ହିରୋ ମଧ୍ୟ ଅନେକବାର ଶତ୍ରୁଙ୍କ ଦ୍ୱାରା ଆକ୍ରାନ୍ତ ହୋଇଥିଲେ । କିନ୍ତୁ ଆର୍କିମିଡସଙ୍କର ନାନା ପ୍ରକାର ଉଦ୍ଭାବନା ଯନ୍ତ୍ର ଓ କୌଶଳ ସାହାଯ୍ୟରେ ପ୍ରତିଥର ଶତ୍ରୁମାନଙ୍କୁ ସେ ପରାସ୍ତ କରିଦେଉଥିଲେ । ଏଭଳି ସବୁ ମାରାତ୍ମକ ଅସ୍ତ୍ର ମାରଣାସ୍ତ୍ର ଶତ୍ରୁମାନଙ୍କ ସାମରିକ ବାହିନୀ ଉପରେ ନିକ୍ଷେପ କରୁଯାଉଥିଲା । ଯାହାଦ୍ୱାରା ସେମାନେ ପଳେଇ ଯିବାକୁ ବାଧ୍ୟ ହେଉଥିଲେ ବା

ଯୁଦ୍ଧଭୂମିରେ ନିହତ ହେଉଥିଲେ । ଆର୍କିମିଡିସ୍ ଅଗ୍ନି ସୃଷ୍ଟିକାରୀ ଯବ କାଚଦ୍ୱାରା ବହୁ ଶତ୍ରୁ ଜାହାଜ ପୋଡ଼ି ଧୂଆଁ କରି ଦେଇଥିଲେ । ନାନା ଭାବରେ କ୍ଷତିଗ୍ରସ୍ତ ଓ ବିପର୍ଯ୍ୟସ୍ତ ହେବା ଫଳରେ ଆଉ କୌଣସି ଶତ୍ରୁ ଜାହାଜ ହିରୋଙ୍କ ରାଜ୍ୟକୁ ଆକ୍ରମଣ କରିବାକୁ ସାହାସ କରିନଥିଲେ ।

ରୋମାନ ସେନାପତି ମାର୍ସେଲସ୍ ଭାରି ଜିଦ୍‌ଖୋର, ସେ ବାର-ମ୍ବାର ସିରାକ୍ୟୁସ୍ ଆକ୍ରମଣ କଲେ । କିନ୍ତୁ ଆର୍କିମିଡ଼ିସ୍‌ଙ୍କର ଯନ୍ତ୍ରକୌଶଳ ନିମନ୍ତେ ସେ ଜୟଲାଭ କରିପାରୁନଥାନ୍ତି, କିନ୍ତୁ କ୍ରମାଗତ ତିନିବର୍ଷ ଧରି ଆକ୍ରମଣ ଚଳାଇବା ପରେ, ଦେଶର ଆଭ୍ୟନ୍ତରୀଣ ଶତ୍ରୁର ବିଶ୍ୱାସ-ଘାତକତା ଫଳରେ ୨୧୨ ଖ୍ରୀ:ପୂ: ରେ ରୋମାନ ସୈନ୍ୟମାନେ ସିରାକ୍ୟୁସ୍ ଦଖଲ କରିନେଲେ । ରାଜା ହିରୋ ବନ୍ଦୀ ହେଲେ ଏବଂ ଦେଶର ବିଶିଷ୍ଟ ନାଗରିକ ବୃନ୍ଦ, ସାମରିକ ସେନାପତିମାନେ ଓ ପ୍ରଜାମାନେ ସମସ୍ତେ ଆସି ମାର୍ସେଲସଙ୍କ ନିକଟରେ ମୁଣ୍ଡ ନୁଆଁଇ ପ୍ରାଣଭିକ୍ଷା କରି ରୋମାନ ରାଜାଙ୍କ ଆନୁଗତ୍ୟ ସ୍ୱୀକାର କଲେ ।

ଏଣେ ସେଇ ଭୋଳା ବୈଜ୍ଞାନିକ ଆର୍କିମିଡ଼ିସ୍ ଏସବୁ ଘଟଣାର କିଛି ଖବର ନରଖି ସେ ତାଙ୍କ ଗବେଷଣାଗାରରେ ନିଜ ସାଧନାରେ ନିମଗ୍ନ ଥିଲେ । ଶତ୍ରୁ ସୈନ୍ୟ ତାଙ୍କ ଗବେଷଣାଗାରରେ ଆର୍କିମିଡ଼ିସ୍‌ଙ୍କୁ ସନ୍ଧାନକରି ବିଜୟୋଲ୍ଲାସରେ ମାତିଉଠିଲେ । ମନେ ମନେ ସ୍ଥିର କଲେ ଏହି ମହାନ୍ ବ୍ୟକ୍ତିଙ୍କୁ ଜୀବିତାବସ୍ଥାରେ ବନ୍ଦୀକରି ନେଇଯିବାକୁ ହେବ ସେନାପତି ମାର୍ସେଲସଙ୍କ ନିକଟକୁ । ଜଣେ ସୈନ୍ୟ ଖୋଲା ତରବାରିଟିଏ ଧରି ଛୁଟି ଆସିଲା ତାଙ୍କ ନିକଟକୁ ଓ ହାତଟାଣି ଧରି ପ୍ରଶ୍ନ କଲା—'ତୁମେ କି' ସେଇ ବୈଜ୍ଞାନିକ ଆର୍କିମିଡ଼ିସ୍ ? ଶୀଘ୍ର ଉଠିଆସ ।

ଆର୍କିମିଡ଼ିସ୍ ଏକ ବୈଜ୍ଞାନିକ ସୂତ୍ର ସମାଧାନରେ ଏତେ ନିମଗ୍ନ ଥିଲେ ଯେ ତାଙ୍କ କାନରେ ଏ କଥା ବୋଧହୁଏ ପ୍ରବେଶ କଲା ନାହିଁ । ତାଙ୍କ ଗଭୀର ଚିନ୍ତାରେ ବ୍ୟାଘାତ ସୃଷ୍ଟି ହେବାରୁ ସେ କ୍ରୁଦ୍ଧ ହୋଇ ସୈନିକ ହାତରୁ ନିଜ ହାତକୁ ଟାଣିନେଲେ ଓ ଫଳରେ ତାଙ୍କ ଅଜଣା-ତରେ ସେହି ସୈନିକର ତରବାରି ଛୁଟିକି ଯାଇ ଅନ୍ୟ ଜଣେ ସୈନିକ

ଗଳାରେ ଚୋଟ ଲାଗି ରକ୍ତ ସ୍ରୋତ ଛୁଟିଲା । ସୈନ୍ୟଦଳ ଗର୍ଜ୍ଜିଉଠିଲେ । ମୁଣ୍ଡଟେକ ବୈଜ୍ଞାନିକଙ୍କ ଦୁର୍ନ୍ନି ଦେଖନ୍ତୁ ତ ସଶସ୍ତ୍ର ଶତ୍ରୁ ସୈନ୍ୟଦଳ, ସେ ହତଚକିତ ହୋଇପଡ଼ିଲେ । କାଳେ ତାଙ୍କ ସୂତ୍ର ସମାଧାନ ଅଧା ରହିଯିବ ଭାବି ପୁଣି ମୁଣ୍ଡ ନୁଆଁଇ ଟେବୁଲରେ ଲେଖି ବସିଲେ । ପରାଜିତ ଶତ୍ରୁ ନିକଟରୁ ଏଇ ଅପମାନ ଅସହ୍ୟ ମନେହେଲା ରୋମାନ୍ ସୈନ୍ୟମାନଙ୍କର । ପ୍ରଚଣ୍ଡ ବିକ୍ଷୋଭରେ ସମସ୍ତେ ଝାମ୍ପି ପଡ଼ିଲେ ବୈଜ୍ଞାନିକଙ୍କ ଉପରେ ଓ ହିଂସାର ଏକ ତରବାରି ନେଇଁ ଆସିଲା ସେ ମୁଣ୍ଡ ଉପରକୁ । ଯେଉଁ ମସ୍ତିଷ୍କ ଏତେଦିନ ଧରି ପୃଥିବୀବାସୀଙ୍କୁ ଏତେ ଜ୍ଞାନ ସମ୍ପଦ ଦାନକରି ଆସିଥିଲା ହିଂସା ନିକଟରେ ସେ ମଥା ଚିରଦିନ ପାଇଁ ମୁଣ୍ଡ ନୁଆଁଇଲା । ଏକ ସାମାନ୍ୟ ସୈନିକ ଏଇ ଐତିହାସିକ ଯୁଗାନ୍ତକାରୀ ମହାଜୀବନର ଗୌରବମୟ ଅଧ୍ୟାୟର ଯବନିକା ପାତକଲା ।

ଏ ଘଟଣାରେ ସାରାଦେଶରେ ଗଭୀର ଶୋକର ଛାୟା ଖେଳିଗଲା । ସେନାପତି ମାର୍ସେଲସ୍ ମଧ୍ୟ ଅତ୍ୟନ୍ତ ମର୍ମାହତ ଓ କ୍ଷୁବ୍ଧ ହେଲେ । ତାଙ୍କର ଉଦ୍ଦେଶ୍ୟ ନଥିଲା ଆର୍କିମିଡ଼ିସଙ୍କୁ ହତ୍ୟା କରିବାକୁ । ଶତ୍ରୁପକ୍ଷ ହେଲେବି ସେ ବୁଝିଥିଲେ, ଆର୍କିମିଡ଼ିସ୍ ଦେଶ ଓ ଜାତିର ସମ୍ପଦ । ଯେଉଁ ସୈନିକଟି ବୈଜ୍ଞାନିକଙ୍କୁ ହତ୍ୟା କରିଥିଲା, ତାକୁ କଠିନ ଶାସ୍ତି ମାର୍ସେଲସ୍ ଦେବା ସହିତ ଏଇ ମହାପୁରୁଷଙ୍କ ପ୍ରତି ଉପଯୁକ୍ତ ସମ୍ମାନ ଓ ମର୍ଯ୍ୟାଦା ଦେବାନିମନ୍ତେ ସେ ରାଜ-ସମାରୋହରେ ତାଙ୍କ ସମାଧିର ବ୍ୟବସ୍ଥା କରିଥିଲେ । ସମାଧି ଉପରେ ସୁନ୍ଦର ସ୍ମୃତିସୌଧ ରଚନା କରାଗଲା । କାଳର କରାଳ ଗର୍ଭରେ ସ୍ମୃତିସୌଧ ସିନା ଅରଣ୍ୟାବୃତ ଓ ପରିତ୍ୟକ୍ତ ହୋଇ ଲୋକଚକ୍ଷୁର ଅନ୍ତରାଳକୁ ଚାଲିଯାଇଛି କିନ୍ତୁ ତାଙ୍କ ବୈଜ୍ଞାନିକ ଗବେଷଣାମାନ ଓ ଗାଣିତିକ ସୂତ୍ରମାନ ଚିରଦିନପାଇଁ ବିଶ୍ୱବାସୀଙ୍କ ସମକ୍ଷରେ ଅମ୍ଳାନଭାବେ ବିରାଜମାନ କରୁଥିବ ।



# ଗପ ହେଲେବି ସତ

## ଶ୍ରୀମତୀ କଳାବତୀ ଦେବୀ

ଅନେକ ଦିନ ତଳର କଥା । ଆଜକାଲି ଯେଉଁଠି ଚାବଦ୍ୱୀପ ବନ୍ଦର ହୋଇଛି, ଆଗେ ସେଠାରେ ଘୋର ଜଙ୍ଗଲ ଥିଲା । ବାଘ, ଭାଲୁ ବାଇହ୍ନା, ସମ୍ବର ଓ ମିରିଗ ପଲ ପଲ ହେଉଥିଲେ ।

ସେହି ଘୋର ଜଙ୍ଗଲ ମଝିରେ ଥିବା ଗୋଟିଏ ସ୍ଥାନକୁ ସମସ୍ତେ ମଧୁବନ ବା ଗୁପ୍ତ ବୃନ୍ଦାବନ ବୋଲି କହୁଥିଲେ । ସେଠାରେ କେତୋଟି ତୁଳସୀ ଗଛ, ନଡ଼ିଆ ଗଛ ଓ ଗୋଟିଏ କୂଅ ଥିଲା । ଆଉ ଗୋଟିଏ ମଠ ବି ଥିଲା । ସେହି ମଠରେ ଉଦୟ ଗୋସ୍ୱାମୀ ନାମରେ ଜଣେ ସାଧୁବାବା ରହୁଥିଲେ । ସାଧୁବାବାଙ୍କ ମୁହଁରେ ଲମ୍ବାଲମ୍ବା ଦାଢ଼ୀ । ଆଖି ଦୁଇଟି ଉଜ୍ଜ୍ୱଳ ତାରକାଭଳି ଦିଶେ । ବାହୁ ଦୁଇଟି ଶାଳଗଛ ପରି । ସେ ଗଛର ବକଳ ପିନ୍ଧନ୍ତି । ସବୁବେଳେ ମୌନ ରହନ୍ତି । ଗୁମ୍ଫା ଭିତରେ ରହନ୍ତି । ଗୁମ୍ଫାରୁ ଯେତେବେଳେ ସେ ପଦାକୁ ବାହାରନ୍ତି, ବାଘ ଆସି ତାଙ୍କ ଦେହରେ ଘଷି ହୋଇଯାଏ । ହରିଣ ସବୁ ଆସି ଗୁଡ଼ି ପକାନ୍ତି । କୁମ୍ଭୀର ଆସି ତାଙ୍କ ପାଦ ଛୁଇଁ ଚାଲିଯାଏ । ସାଧୁବାବା କେବେକେବେ 'ଗୋବନ୍ଦନ୍, ଗୋବନ୍ଦମ୍' ମୁଖରେ ଉଚ୍ଚାରଣ କରନ୍ତି ।

ବହୁ ଦୂରଦୂରାନ୍ତରୁ ଯେଉଁ କାଠୁରିଆମାନେ ଡଙ୍ଗାରେ ଆସନ୍ତି, ସେମାନେ ମଧୁବନରେ ଥିବା କୂଅରୁ ପିଇବାପାଇଁ ପାଣି ନିଅନ୍ତି । ମଇଁଷିଆଳମାନେ ବି ପିଇବାପାଇଁ ପାଣି ନିଅନ୍ତି । ସେହି କୂଅର ପାଣି ଖୁବ୍ ମିଠାଲାଗେ । ମହୁଆ ଭଳି ମିଠା । ସେ ପାଣିରୁ ଦି'ଢୋକ ପିଇ ଦେଲେ ଭୋକ ଶୋଷ ଭୁଲି ହୋଇଯାଏ । କୂଅ ଚାରିପାଖରେ ପଡ଼ିଥିବା ବାଲି ଚକ୍‌ଚକ୍ କରେ । ବୈଜ୍ଞାନିକମାନେ ପରୀକ୍ଷା ପରେ

କହିଲେ ସେ ବାଲିରେ ସୁନାଗୁଣ୍ଡ ମିଶି ରହିଛି । ସେଇଥିପାଇଁ ସାଧୁବାବାଙ୍କ ଆଜ୍ଞା ଗୋଟିଏ ଫଳାପଟାରେ ଲେଖା ହୋଇ ଝୁଲୁଥାଏ, 'ଯେତିକି ପାଣି ପିଇବା ପାଇଁ ଦରକାର, ସେତିକି ନିଅ । କୂଅପାଖରେ ପଡ଼ିଥିବା ବାଲିକୁ ଛୁଅଁ ନାହିଁ ।'

୧୯ରେ ହ୍ୟାରିଙ୍ଗଟନ ନାମକ ଜଣେ ଗୋରା ହାକିମ, ଚନ୍ଦନ ମହାପାତ୍ର ନାମକ ଓଡ଼ିଶାର ଜଣେ ବିଶିଷ୍ଟ ବ୍ୟକ୍ତିଙ୍କୁ ସଙ୍ଗରେ ନେଇ ଡ଼ଙ୍ଗାରେ ବୃଦ୍ଧଜଣେ ନାଉରିଆଙ୍କ ସହିତ ମଧୁବନରେ ପହଞ୍ଚିଲେ । କୂଅ ପାଖରେ ଟଙ୍ଗା ହୋଇଥିବା ଫଳାପଟାକୁ ଦେଖି ସାହେବ ପଚାରିଲେ, 'ଏଥିରେ କଣ ଲେଖା ହୋଇଛି ?' ଚନ୍ଦନ ମହାପାତ୍ର ଇଂରାଜୀ ଅନୁବାଦ କରି ବୁଝାଇ ଦେଲେ, 'ଯେତିକି ପାଣି ପିଇବା ପାଇଁ ଦରକାର, ସେତିକି ନିଅ, କୂଅ ପାଖରେ ପଡ଼ିଥିବା ବାଲିକୁ ଛୁଅଁ ନାହିଁ' । ଆଗ୍ରହ ସହକାରେ ସାହେବ ସେହି କୂଅରୁ ଗୋଟିଏ ଗ୍ଲାସ୍ ପାଣି ପିଇବା ପରେ କହିଲେ— 'ମୁଁ ଏଥିରୁ ଦୁଇ ମାଠିଆ ପାଣି ନେଇ ଅନ୍ୟ ସାହେବ ହାକିମମାନଙ୍କୁ ଦେଖାଇବି । ଗବେଷଣାଗାରରେ ପରୀକ୍ଷା କରାଇବି । ଏ ପାଣି କପରି ଓ କାହିଁକି ଏପରି ମିଠା ଲାଗୁଛି । ବାଲିରୁ କିଛି ନେବି । ମୋର ବିଶ୍ବାସ ଏଥିରେ ସୁନାଗୁଣ୍ଡ ମିଶିଛି ।

ଚନ୍ଦନ ମହାପାତ୍ର ବିନୟରେ କହିଲେ—'ସାର୍, ଓଡ଼ିଶା ହେଉଛି ଏକ ଶ୍ରେଷ୍ଠ ଦେଶ । ଏଠାରେ ଜଗତର ନାଥ ଜଗନ୍ନାଥ ବିଜେ କରିଥିବାରୁ, ଏହାକୁ ଜଗନ୍ନାଥ ଦେଶ ବି କହନ୍ତି । ଏ ଦେଶ ରଜାଙ୍କୁ ଠାକୁର ରାଜା ବୋଲିଯାଏ । ଏ ଦେଶର ନଦୀ ମହାନଦୀ ନାମରେ ଖ୍ୟାତ । ଏ ଦେଶର ଦାଣ୍ଡକୁ ବଡଦାଣ୍ଡ ବୋଲିଯାଏ । ଏ ଦେଶର ଅଗନାଅଗନ ବନସ୍ତରେ ସାଧୁସନ୍ଥମାନେ, ମୁନିଋଷିମାନେ ଗୁମ୍ଫାରେ ରହି ହରିନାମ ସୁଧାପାନ କରି ତପସ୍ୟା କରନ୍ତି । ଏଠାରେ ସେହିପରି ଜଦୁନାଥ ଗୋସ୍ୱାମୀ ନାମରେ ଜଣେ ସାଧୁବାବା ରହି ତପସ୍ୟା କରୁଛନ୍ତି । ତାଙ୍କର ଆଜ୍ଞା ଅବଜ୍ଞା କଲେ ଆମକୁ ବିପଦରେ ପଡିବାକୁ ହେବ ।'

ଚନ୍ଦନ ମହାପାତ୍ରଙ୍କ କଥାଶୁଣି ଗୋରାସାହେବ ଜଣକ ରାବଣ ବାହିନୀର ଗର୍ଜି ଫୁଟିଲା ପରି ହୋ, ହୋ, ହସି କହିଲେ— 'ମିଛ; ମିଛ, ସବୁ ମିଛ । ମୁଁ ନିଶ୍ଚୟ ଦୁଇ ମାଠିଆ ପାଣି ନେବି । ଦେଖିବି ତୁମର ସାଧୁବାବାଙ୍କର କରାମତି କେତେ ! ମୋତେ ସେ କି ବିପଦରେ ପକାଇ ପାରିବେ ?'

ଚନ୍ଦନ ମହାପାତ୍ର ବିନମ୍ରଭାବରେ ଉତ୍ତର ଦେଇ କହିଲେ 'ସ୍ୱର୍ଗକୁ ନିଶୁଣୀ ନାହିଁ, ବଡ଼ ଲୋକଙ୍କୁ ଉତ୍ତର ନାହିଁ ସାର୍ । ଆପଣଙ୍କର ଯାହା ଇଚ୍ଛା ତାହା କରନ୍ତୁ । ପଛରେ ମୋର ଦୋଷ ଦେବେ ନାହିଁ ।' ହ୍ୟାରିଙ୍ଗଟନ ସାହେବ କଣ୍ଟଧର, ହୋଳ ଟୋଳା, ଜମ୍ବୁ ଓ ରାମଚଣ୍ଡୀ ଭ୍ରମଣକରି ଦୁଇଦିନ ପରେ ପୁଣି ମଧୁବନକୁ ଫେରି ଆସିଲେ । ମଧୁବନ କୂଅରୁ ଦୁଇ ମାଠିଆ ପାଣି ଅଣାଇ ଡଙ୍ଗାରେ ରଖିଲେ । ନାଉରିଆମାନେ ଡଙ୍ଗା ଫିଟାଇ ସେଠାରୁ ଅନନ୍ତପୁର ଅଭିମୁଖେ ଯିବାପାଇଁ ବାହାରିଲେ ।

ଡଙ୍ଗା ଅଳ୍ପବାଟ ଯାଇଛି କି ନାହିଁ, ଆକାଶରେ କଳାବଉଦ ଘୋଟିଗଲା । ଅନ୍ଧକାରରେ ମୁହଁକୁ ମୁହଁ ଦିଶିଲା ନାହିଁ । ଝଡ଼ ତୋଫାନ ପ୍ରବଳ ବେଗରେ ମାଡ଼ିଆସିଲା । ନାଉରିଆମାନେ ପ୍ରମାଦ ଗଣି; 'ମା ରାମଚଣ୍ଡୀ ରଖ' ବୋଲି ଚିତ୍କାରି ଗୁହାରିଲେ । ପ୍ରବଳ ତୋଫାନରେ ଡଙ୍ଗାଟି ହୋହଲା ଦୋହଲା ଗୋଟିଏ ବଡ଼ ଗଛରେ ପିଟି ହୋଇଗଲା । ଡଙ୍ଗାରେ ଥିବା ମାଠିଆ ଦୁଇଟି ଭାଙ୍ଗି ଗଲା । ମାଠିଆରେ ଥିବା ପାଣିରୁ ସାତ ଆଠଟି ନାଗ ସାପ ବାହାରି ଫଣା ଟେକି, ଫଁ ଫଁ ହୋଇ, ସାହେବଙ୍କ ଆଡ଼କୁ ଧାଇଁଲେ । ସାହେବ ପ୍ରାଣ ବିକଳରେ ଦଉଡ଼ି ଆସି ଚନ୍ଦନ ମହାପାତ୍ରଙ୍କୁ କୁଣ୍ଢାଇଧରି, 'ମୋତେ ରକ୍ଷାକର, ମୋତେ ରକ୍ଷାକର' ବୋଲି କରୁଣ କ୍ରନ୍ଦନରେ ବନସ୍ଥଳୀ କମ୍ପାଇ ଦେଲେ । ଭୟରେ ବଇଡ଼ା ପତ୍ରପରି ଥରିଲେ ।

ଚନ୍ଦନ ମହାପାତ୍ର ଅତି ନମ୍ରଭାବରେ କହିଲେ—"ସାର୍ ଆପଣ ମୋ' କଥା ଶୁଣିଲେ ନାହିଁ । ଆପଣ ସେ କୂଅରୁ ପାଣି ଆଣିବାରୁ ଏ ଘଟଣା ହେଲା । ଏ ବିପଦରୁ ରକ୍ଷା ପାଇବାର ଏକମାତ୍ର ଉପାୟ

ହେଉଛନ୍ତି, ଆପଣ ନତଜାନୁ ହୋଇ, ହାତ ଯୋଡ଼ି, ସାଧୁବାବା ଜଦୁ-ନାଥ ଗୋସ୍ୱାମୀଙ୍କ ଉଦ୍ଦେଶ୍ୟରେ ସାଷ୍ଟାଙ୍ଗ ପ୍ରଣାମକରି କୁହନ୍ତୁ— 'ମହାରାଜ, ମୋର କୃତକର୍ମ ପାଇଁ ମୁଁ ଗଭୀର ଭାବରେ ଦୁଃଖିତ; ଆଜ ଅନୁତପ୍ତ । ମୋତେ କ୍ଷମା ଦେଇ ମୋର ଜୀବନ ବଞ୍ଚାନ୍ତୁ । ମୁଁ ଭାରତରେ ଥିବାଯାଏ କୌଣସି ସାଧୁସନ୍ଥଙ୍କର ଆଜ୍ଞାକୁ ଅବଜ୍ଞା କରିବି ନାହିଁ ।'

ସାହେବ କ୍ଷମା ପ୍ରାର୍ଥନା କଲାପରେ ଆକାଶ ନିର୍ମଳ ହୋଇ-ଗଲା । ଝଡ଼ ତୋଫାନ କମିଗଲା । ନାଗସାପମାନେ ଉଭେଇ ଗଲେ । ନାଉରିଆମାନେ ଆଶ୍ୱସ୍ତ ହେଲେ । ଡଙ୍ଗା ନିରାପଦରେ ଯାଇ ଅନନ୍ତପୁର ମୁକାମରେ ପହଞ୍ଚିଲା ।

ସାହେବଙ୍କୁ ସାକ୍ଷାତ କରିବା ପାଇଁ ସେଠାରେ ଅପେକ୍ଷା କରି-ଥିବା ଲୋକଙ୍କୁ ସେ ଭାବ ଗଦ୍‌ଗଦ୍ କଣ୍ଠରେ କହିଲେ—

'ପ୍ରକୃତରେ ଆପଣମାନଙ୍କର ଓଡ଼ିଶା ହେଉଛି ସାଧୁ ସନ୍ଥଙ୍କର ଦେଶ । ଏ ଦେଶରେ ଜନ୍ମଲାଭ କରିଥିବାରୁ ଆପଣମାନେ ଭାଗ୍ୟବାନ ।'



# ବିପଦକୁ ଆଲିଙ୍ଗନ

ଶ୍ରୀ ଲକ୍ଷ୍ମୀନାରାୟଣ ମହାନ୍ତି

୧୮୬୬ ସାଲରେ ଆମେରିକାରେ ଗୋଟିଏ ଖବର ପ୍ରଚାରିତ ହେଲା--ସମୁଦ୍ରରେ ଏକ ବିଶାଳ ଭୟଙ୍କର ଜଳଜନ୍ତୁ ଠାଏ ଠାଏ ଦେଖାଯାଉଛି । ନାବିକମାନେ ଏ ବିଷୟରେ ନାନା ରକମ ଭୟାବହ ବିବରଣୀ ଦେବାକୁ ଲାଗିଲେ । ଖବର କାଗଜରୁ ସେସବୁ ପଢ଼ି ଲୋକମାନଙ୍କ ଭିତରେ ଚହଳ ପଡ଼ିଲା ।

ନାବିକମାନଙ୍କ ବିବରଣୀରୁ ଜଣାଗଲା—ଜଳଜନ୍ତୁଟି ତିମି-ଜାତୀୟ, ଆକାରରେ ତିମିଠାରୁ ଢେର ବଡ଼, ଅତି ଦ୍ରୁତ ଗତିରେ ଧାଇଁ ପାରେ । ତେବେ କେହି ତା ସମ୍ପର୍କରେ ପରିଷ୍କାର ଧାରଣା ଦେଇ ପାରିଲେ ନାହିଁ । ଦିନେ ଶୁଣାଗଲା, ସମୁଦ୍ରରେ ଦୁଇଟା ଜାହାଜ କୌଣସି ଜନ୍ତୁ ସହିତ ଧକ୍କା ଖାଇ ଯାତ୍ରୀସମେତ, ପାଣିରେ ବୁଡ଼ି ଯାଇଛନ୍ତି । ଏହିପରି ନାନା ରକମ ଗୁଜବ୍ ଚଉଦିଗରେ ଖେଳିଗଲା । ଲୋକେ ମହାଭାବନାରେ ପଡ଼ିଲେ ।

ଫ୍ରାନ୍ସର ବିଖ୍ୟାତ ପ୍ରାଣୀ-ବିଜ୍ଞାନ ପଣ୍ଡିତ ଅଧ୍ୟାପକ ଆରୋନା ନାନା ଜାଗା ବୁଲି ବୁଲି ହରେକ ରକମ ବିବରଣୀ ଯୋଗାଡ଼ କଲେ । ଗୋଟିଏ ପ୍ରବନ୍ଧରେ ଜଣାଇଲେ—'ବହୁ କାଳ ଆଗେ 'ନାରହୋୟାଲ୍ ନାମରେ ଏକ ବିରାଟକାୟ ଜଳଜନ୍ତୁ ସମୁଦ୍ରରେ ବିଚରଣ କରୁଥିଲା । ଆଜିକାଲି ସେହି ଜନ୍ତୁ ପ୍ରାୟ ଦେଖାଯାଉ ନାହିଁ, ବର୍ତ୍ତମାନ ଦେଖାଯାଉ-ଥିବା ଜନ୍ତୁଟି ତାହାରି ବଂଶଧର ହୋଇପାରେ ।'

ସେହି ଜଳଜନ୍ତୁ ବିଷୟରେ ଠିକଣା ଗବେଷଣା କରିବା ପାଇଁ ଏକ ସାଗର ଅଭିଯାନୀ ଦଳ ପଠାଇବାକୁ ଆମେରିକା ସରକାର ସ୍ଥିର

କଲେ । ଗୋଟିଏ ପ୍ରକାଣ୍ଡ ତିମି-ଶିକାରୀ ଜାହାଜକୁ ନାନା ଭାବରେ ସୁରକ୍ଷିତ ଓ କମାଣ-ବନ୍ଧୁକରେ ସୁସଜ୍ଜିତ କରି ସମୁଦ୍ର ଭିତରକୁ ପଠାଗଲା । ସେହି ଦଳରେ ରହିଲେ ଅଧ୍ୟାପକ ଆରୋନା, ତାଙ୍କର ପୁରୁଣା ସେବକ କନସେଲ୍ ଓ ନାମଜାଦା ତିମି-ଶିକାରୀ ନେଡ୍‌ଲାଣ୍ଡ୍ ।

ଜାହାଜଟି ଦ୍ରୁତ ବେଗରେ ନୀଳ ସମୁଦ୍ର ବକ୍ଷରେ ଧାଇଁ ଚାଲିଲା । ଦିନେ ସକାଳେ ତିନିହେଁ ଜାହାଜର ଡେକ୍ ଉପରେ ଠିଆ ହୋଇ 'ବାଇନାକୁଲର' ଯୋଗେ ଚତୁର୍ଦ୍ଦିଗକୁ ଆଖି ବୁଲାଉଥିଲେ, ସେତିକିବେଳେ ନେଡ୍‌ଲାଣ୍ଡ୍ ପାଟିକରି ଉଠିଲେ—'ହେଇଟି, ହେଇ ସେଇଟା ଦେଖାଯାଉଛି ।'

ଏହି ଚିତ୍କାର କାନରେ ବାଜିଲାମାତ୍ରେ କାପ୍ତାନ୍ ଜାହାଜର ଗତି ବଢ଼ାଇ ଦେଲେ । ଜନ୍ତୁଟିକୁ ଲକ୍ଷ୍ୟ କରି ଜାହାଜ ସମୁଦ୍ରରେ ଛୁଟିଲା । ଜନ୍ତୁଟିର ପାଖାପାଖି ହେଲାରୁ, ନେଡ୍‌ଲାଣ୍ଡ୍ ଗୋଟାଏ ହାରପୁନକୁ ଲକ୍ଷ୍ୟ କରି ଫିଙ୍ଗିଲେ । ବଡ଼ ଅଜବ କଥା, ହାରପୁନଟା ସେହି ଜନ୍ତୁର ପିଠିରେ ବାଜି ଫେରି ଆସିଲା । ଏହା ଦେଖି ସଭିଏଁ ଅବାକ୍ ହେଲେ ।

ତା' ପରେ କମାଣରୁ ଗୁଳିଫୁଟା ହେଲା । ମାତ୍ର ସେଥିରେ କିଛି ଫଳ ହେଲା ନାହିଁ । ଓଲଟି ଜନ୍ତୁର ପିଠି ଉପରେ ହଠାତ୍ ଗୋଟାଏ ଆଖି ଝଲସା ଶକ୍ତ ଆଲୁଅ ଜଳି ଉଠି ଲିଭିଗଲା । ସେହି ଜନ୍ତୁର ଦେହରୁ ପ୍ରଚଣ୍ଡ ବେଗରେ ଜଳର ଧାର ଆସି ଜାହାଜ ଉପରେ ବରଷିବାକୁ ଲାଗିଲା । ଜଳ ତୋଡ଼ରେ ଅତିଷ୍ଠ ହୋଇ ଡେକ୍ ଉପରେ ଠିଆ ହୋଇଥିବା କନସେଲ୍, ନେଡ୍‌ଲାଣ୍ଡ୍ ଓ ଅଧ୍ୟାପକ ଆରୋନା ସମସ୍ତେ ସମୁଦ୍ର ଭିତରେ ପଡ଼ିଯାଇ ଉବୁଟୁବୁ ହେଲେ । ଢେଉ ସାଙ୍ଗରେ ପ୍ରାୟ ବାର ଘଣ୍ଟାରୁ ଅଧିକ ଯୁଝି ଯୁଝି ସେମାନେ କ୍ଳାନ୍ତ ହୋଇଗଲେ । ସେମାନଙ୍କର ମନେ ହେଲା, ସତେକି ଗୋଟିଏ ଚଳନ୍ତା ଦ୍ୱୀପ ଉପରେ ଠିଆ ହୋଇଛନ୍ତି !

ଅଧ୍ୟାପକ ଆରୋନା ପଚାରିଲେ—"ନେଡ୍‌ଲାଣ୍ଡ୍, କହିପାରିବ ଆମେ ଏକ୍ଷଣି କେଉଁଠି ଅଛୁ ?"

ନେଡ୍‌ଲ୍ୟାଣ୍ଡ୍ କହିଲେ—"ଗୋଟିଏ ବିଶାଳ 'ନାରହୋଏଲ୍'ର ପିଠି ଉପରେ ଠିଆ ହୋଇଛୁ ମାତ୍ର ତାହାର ପିଠିଟା ଯେମିତି ଲୁହାରେ ତିଆରି ମାଲୁମ ହେଉଛି ।"

ଧୀରେଁ ଧୀରେଁ ସେହି ପିଠିଟା ଦଠାରୁ ଫାଟିଯାଇ ସେଥିରେ ଗୋଟିଏ ବଡ଼ ଗାତ ହୋଇଗଲା । ସେ ତିନିହେଁ ଗାତ ଭିତରେ ଗଳି ପଡ଼ିଲେ । ସଙ୍ଗେ ସଙ୍ଗେ ଆଠ ଜଣ ମୁଖାପିନ୍ଧା ଲୋକ କୁଆଡ଼ୁ ବାହାରି ଆସି ସେମାନଙ୍କୁ ଧରି ନେଇ ଚଳେ ଗୋଟିଏ କୋଠରୀ ଭିତରେ ବନ୍ଦ କରିଦେଲେ ।

ଚଇଧନ ସେମାନଙ୍କର ପରିଚୟ ପାଇ ଜାହାଜର କାପ୍ତାନ୍ ଖୁବ୍ ଖୁସୀ ହେଲେ, ସେମାନଙ୍କୁ ଜଣାଇଲେ—"ଆପଣମାନେ ଆଜୀବନ ଏହି ଜାହାଜରେ ବନ୍ଦୀ ହୋଇ ରହିବେ । ତେଣୁ ଆପଣମାନଙ୍କୁ ଏଠାର ନିୟମ ସବୁ ମାନି ଚଳିବାକୁ ହେବ । ଆପଣମାନେ ଏଠାରେ ଯେଉଁସବୁ ଖାଦ୍ୟ ଖାଇଲେ, ସେସବୁ ପନିପରିବା ଓ ମାଛ ମାଂସ ମୁଁ ସାଗର ତଳୁ ଯୋଗାଡ଼ କରୁଛି, ଏପରିକି ଦୁଧ, ଛେନା ଚିନି ପ୍ରଭୃତି । ସମୁଦ୍ରକୁ ମୁଁ ଭାରି ସୁଖ ପାଏ । ତା'ଛଡ଼ା ମୁଁ ଆଉ କିଛି ଭାବି ପାରେନା । ଚାଲନ୍ତୁ, ଆପଣମାନଙ୍କୁ ଜାହାଜଟା ଟିକିଏ ବୁଲାଇ ଦେଖାଇ ଆଣେ ।"

ଅଧ୍ୟାପକ ଆରୋନା ଜାହାଜଟିର ବିଭିନ୍ନ ଅଂଶ ଯେତେ ଦେଖିଲେ ସେତେ ଅବାକ୍ ହେଲେ । ଅଦ୍ଭୁତ କଳ-କବ୍‌ଜାସବୁ ସେଥିରେ ଖଞ୍ଜା ଯାଇଥିଲା । ସେ କେତେକ ବୁଝିଲେ ତ କେତେକ ମୋଟେ ବୁଝିପାରିଲେ ନାହିଁ । ପାଠାଗାର ଓ ଯାଦୁଘର ଦେଖି ସେ ଚାଟକା ହୋଇଗଲେ । କାପ୍ତାନଙ୍କ ନିଜ କୋଠରୀଟି ଏକ ଆଶ୍ରମ ଭଳି ବୋଧ ହେଲା ।

କାପ୍ତାନ ପୁଣି ଅଧ୍ୟାପକ ଆରୋନାଙ୍କୁ ବୁଝାଇଲେ—"ଏହି ଜାହାଜରେ ମୁଁ ଏକ ଅଲୌକିକ ଶକ୍ତି ସଞ୍ଚାର କରିଛି । ମୋ ଜାହାଜର ଗତି-ବେଗ ଯେକୌଣସି ଜାହାଜଠାରୁ ଢେର ବେଶୀ । ପାଣି ତଳେ ଓ ଉପରେ ମୋ ଜାହାଜ ଘଣ୍ଟାକୁ ପଚିଶ ମାଇଲ ବେଗରେ ଯାଇ ପାରେ ।

ଜାହାଜ ଚଳାଇବା ପାଇଁ ମୁଁ ସମୁଦ୍ର-ଜଳରୁ ଶକ୍ତି ଯୋଗାଡ଼ କରେ । ମୋ ଧନଦଉଲତର ସୀମା ନାହିଁ । ମୁଁ ହେଉଛି ସାଗର ସାମ୍ରାଜ୍ୟର ଏକମାତ୍ର ଅଧିପତି ।"

ଅଧ୍ୟାପକ କପ୍ତାନଙ୍କୁ ପଚାରିଲେ—"ଆପଣ କପରି ଏହି ଜାହାଜଟି ତିଆରି କଲେ ?"

କପ୍ତାନ୍ କହିଲେ—"ପୃଥିବୀର ସବୁ ଦେଶରୁ ଭଲ ଭଲ କଳ-କବ୍‌ଜା, ଲୁହା ପ୍ରଭୃତି ଦରକାରୀ ଜିନିଷ ଯୋଗାଡ଼ କରି ଗୋଟିଏ ନିର୍ଜନ ଦ୍ୱୀପରେ କାରଖାନା ବସାଇ ବହୁ ନିପୁଣ କାରିଗରମାନଙ୍କ ଦ୍ୱାରା ଏହି ଜାହାଜଟି ତିଆରି କରିଛି । ସେମାନେ ସମସ୍ତେ ଏବେ ବି ମୋ ପାଖରେ ଅଛନ୍ତି । ଜାହାଜର ନାମ ହେଉଛି 'ନଟିଲସ୍' । ଆଜି ସମୁଦ୍ର ମୋର ଦେଶ, ସାଥୀ ଓ ପରିବାର । ଦେଖନ୍ତୁ, ଏଠାରେ ଆପଣ-ମାନଙ୍କର କିଛି ଅସୁବିଧା ହେବ ନାହିଁ ।"

ଏବେ କପ୍ତାନ ଅଧ୍ୟାପକ ଓ ତାଙ୍କ ସାଥୀଦୁହିଁଙ୍କୁ ସମୁଦ୍ର-ତଳ ବଣରେ ଶିକାର କରିବାକୁ ନେଇଗଲେ । ସେମାନେ ଅଜବ ପୋଷାକ ପିନ୍ଧିଲେ ଏବଂ ଅଦ୍ଭୁତ ଧରଣର ବନ୍ଧୁକ ଧରିଲେ । ଜଳ ଭିତରେ ରହି ନାନା ଧରଣର ଭୟଙ୍କର ଜୀବଜନ୍ତୁ ଦେଖିବାକୁ ପାଇଲେ । ହଠାତ୍ ଗୋଟିଏ ଭୟଙ୍କର ଅଜଣା ସାମୁଦ୍ରିକ ଜୀବଜନ୍ତୁ ଓ ବିରାଟ ରାକ୍ଷସ 'ମାଙ୍କଡ଼ସା'ର ହାବୁଡ଼ରେ ପଡ଼ିଲେ । କପ୍ତାନ୍ ଅବଶ୍ୟ ସେଗୁଡ଼ାକୁ ଗୁଳିକରି ମାରିଦେଲେ ।

ଶିକାର କରିସାରି ସେମାନେ ଜାହାଜକୁ ଫେରିଆସିଲେ । ପୁଣି ଜାହାଜ ପାଣି ତଳେ ଛୁଟିଲା । କେତୋଟି ପ୍ରବାଳ ଦ୍ୱୀପ ଟପି ଜାହାଜ ନିଉଗିନି ଦ୍ୱୀପରେ ଯାଇ ଅଟକିଲା । ଅଧ୍ୟାପକ ଆରୋନା ନିଜ ସାଥୀ-ମାନଙ୍କୁ ନେଇ ଶିକାର କରିବାକୁ ବାହାରିଲେ । ସେଠାର ସ୍ଥାନୀୟ ଅଧିବାସୀମାନଙ୍କ ସହିତ ସେମାନଙ୍କର ସଂଘର୍ଷ ହେଲା । ପରେ କପ୍ତାନ୍ ଅତି କୌଶଳରେ କେତେଜଣଙ୍କୁ ବନ୍ଦୀ କଲେ, ଆଉ କେତେକ ପାଣିକୁ ଡେଇଁପଡ଼ି ପଳାଇଗଲେ ।

ତା ପରେ ଜାହାଜ ଦ୍ରୁତ ଗତିରେ ଧାଇଁଲା । ଭାରତ ମହାସାଗରରେ ଗୋଟିଏ ଜାହାଜ ପଛର ନଟିଲସ୍‌ର ଭୀଷଣ ଲଢ଼େଇ ଲାଗିଲା । ସେଥିରେ ଜାହାଜର ଜଣେ ନାବିକ ଲଢ଼େଇରେ ନିହତ ହେଲା । କପ୍ତାନ୍ ତାହାକୁ ସାଗର ତଳର ରଙ୍ଗ ବେରଙ୍ଗ ପ୍ରବାଳ-ଖଚିତ କବରଖାନାରେ ନେଇ କବର ଦେଲେ । ସେଠାରେ ନାନା ରକମ ଅଜଣା ପକ୍ଷୀ ଦେଖିବାକୁ ମିଳିଲା ।

ଲଙ୍କା ନିକଟରେ ବିଖ୍ୟାତ ମୁକ୍ତାବଣରୁ ବୁଡ଼ାଳିମାନେ ମୁକ୍ତା ସଂଗ୍ରହ କରୁଥାନ୍ତି । ଆରୋନା ଓ ତାଙ୍କ ସାଙ୍ଗମାନେ ଏଠାରେ ବହୁତ ରକମର ଚମତ୍କାର ମୁକ୍ତାସବୁ ଦେଖିବାକୁ ପାଇଲେ । ଆକାରରେ ଗୋଟିଏ ଗୋଟିଏ ମୁକ୍ତା ଫୁଟବଲ୍ ପରି ପ୍ରକାଣ୍ଡ ହୋଇଥାଏ ।

ଜାହାଜ ଆରବ ସାଗର ଟପି ଲୋହିତ ସାଗରରେ ପାଇ ପଡ଼ିଲା । ସେଠାରେ ସେମାନେ କେତେ ବିଚିତ୍ର ବିଭିନ୍ନ ଆକାରର ସ୍ପଞ୍ଜ୍ ସବୁ ଦେଖିଲେ । ଜାହାଜ ଭୂମଧ୍ୟସାଗର ମଝିରେ ଗଲାବେଳେ ସମୁଦ୍ର ଖାରର ଦେଶଗୁଡ଼ିକରେ ନାନା ରକମର ସୁଆଦିଆ ଫଳ ଓ ମନଲୋଭା ଫୁଲର ବଗିଚାସବୁ ସେମାନଙ୍କ ଆଖି ଝଲସାଇ ଦେଲା । ଗ୍ରୀସ୍ ଦେଶ ପରେ ଜାହାଜ ଜିବ୍ରାଲଟର ପ୍ରଣାଳୀ ବାଟେ ଆଟ୍‌ଲାଣ୍ଟିକ୍ ମହାସାଗରରେ ପଶିଲା । କପ୍ତାନ୍ ଭିଗୋ ଉପସାଗରରେ ଗୋଟିଏ ବୁଡ଼ା ଜାହାଜ ପାଖକୁ ସେମାନଙ୍କୁ ନେଇଗଲେ । ସେଥିରେ ଭର୍ତିଥିବା ସୁନା ବାକ୍ସକୁ ଦେଖାଇ କହିଲେ—"ପୃଥିବୀର ଅଧିକାଂଶ ଲୋକ ହେଉଛନ୍ତି ଗରିବ । ତେଣୁ ମୁଁ ସେମାନଙ୍କୁ ଏହି ସୁନାସବୁ ଦାନ କରିଥାଏ ।"

ଜାହାଜ ଦକ୍ଷିଣ ଦିଗକୁ ମୁହାଁଇଲା, ବରଫ ରାଇଜରେ ଯାଇ ପହଞ୍ଚିଲା । କପ୍ତାନ୍ ବରଫ ଖଣ୍ଡସବୁ କାଟି କାଟି ଆଗେଇ ଚାଲିଲେ । ଅଧ୍ୟାପକ ଆରୋନା କପ୍ତାନଙ୍କୁ ପଚାରିଲେ—"ଆପଣ କ'ଣ ଆହୁରି ଦକ୍ଷିଣକୁ ଯିବେ ?"

କପ୍ତାନ କହିଲେ—"ହଁ । ଅକସାଏ ଦକ୍ଷିଣ ମେରୁକୁ କେହି ଯାଇପାରି ନାହାନ୍ତି । ମୁଁ ଏତେ ଦୂରକୁ ଆସି ଏଠାରୁ ଫେରିଯାଇ ପାରିବ ନାହିଁ । ଆମେ ବରଫ ତଳେ ତଳେ ଯିବା । ଉପରେ ଦିନା ଜମାଟ ବରଫ ଅଛି କିନ୍ତୁ ତଳେ ପାଣି ଥାଏ । ଆମର କଛି ଅସୁବିଧା ହେବ ନାହିଁ ।"

ବରଫ ତଳେ ତଳେ ଜାହାଜ ଧୀରେ ଧୀରେ ଆଗେଇ ଚାଲିଲା, ପହଞ୍ଚିଲା ଯାଇ ଦକ୍ଷିଣ ମେରୁରେ । ସେଠାରେ ବହୁ ବିଚିତ୍ର ପ୍ରାଣୀଙ୍କର ଦେଖା ମିଳିଲା । ଦୁଇଦିନ ରହିଲା ପରେ ଜାହାଜ ପୁଣି ବରଫ ତଳେ ଗଲାବେଳେ ପ୍ରକାଣ୍ଡ ବରଫ ମୁଣ୍ଡା ସହ ଧକ୍କା ଖାଇଲା । ଉପରକୁ ଉଠିପାରିଲା ନାହିଁ । ତେଣୁ ଜାହାଜରେ ହାଉଆ ବ ସରି ଆସିଲା । ତଥାପି ସମସ୍ତେ ବରଫ କାଟିବାରେ ଲାଗି ପଡିଲେ । ବିଜୁଳି ଶକ୍ତିରେ ପାଣି ଗରମ କରି ବରଫ ଉପରେ ଢ଼ାଳିବାରୁ ବରଫ ତରଳିଲା, ବାଟ ଫିଟିଲା—ଜାହାଜ ପାଣି ଉପରକୁ ଉଠି ଆସିଲା ।

ଉତ୍ତର ଦିଗକୁ ମୁହାଁଇ ଜାହାଜ ଶେଷରେ ନରଓ୍ୱେ ଉପ-କୂଳରେ ଲାଗିଲା । କୂଳ ଦିଶିବାରୁ ନେଡ୍‌ଲ୍ୟାଣ୍ଡ୍ ଚୁପ୍‌ଚାପ୍ ଅଧ୍ୟାପକ ଆରୋନା ଓ କନସେଲ୍‌କୁ କହିଲେ—"କୂଳ ଦିଶିଲାଣି । ଏକ୍ଷଣି ସୁବର୍ଣ୍ଣ-ସୁଯୋଗ, ଆମେ ଏଠୁ ପଳାଇଯିବା । ଆଜି ରାତି ଅଧରେ ସମସ୍ତେ ଶୋଇଥିଲାବେଳେ ଆମେ ଏ କାମ ହାସଲ କରିବା ।"

ସେତିକିବେଳେ ପାଟିଗୋଳ ଓ କରୁଣ ଚିତ୍କାର ଶୁଭିଲା । ଭୟଙ୍କର ଭଉଁରୀ ଭିତରେ ଜାହାଜ ପଡ଼ିଗଲା । ଜଳ ଆବର୍ତ୍ତ, ଆଉ ରକ୍ଷା ନାହିଁ !

କପ୍ତାନ୍‌ଙ୍କର ଅମନୋଯୋଗିତା ଫଳରେ ଏପରି ମାରାତ୍ମକ କାଣ୍ଡ ଘଟିଲା । କୌଣସିମତେ ଜାହାଜକୁ ଆଉ ରକ୍ଷା କରାଯାଇ ପାରିବ ନାହିଁ ।

ଆଉ କିଛି ଉପାୟ ନ ଦେଖି, ତିନି ଜଣଯାକ ଅଭିଯାତ୍ରୀ ଜୀବନକୁ ପାଣି ଛଡ଼ାଇ ଛୋଟିଏ ନୌକା ତଳକୁ ଖସାଇ ଦେଇ

ସେଥିରେ ବସିଲେ । କିଛିକ୍ଷଣ ପରେ ନୌକାଟି ଉପକୂଳର ଉଅଁଶୀ ଭିତରେ ପଡ଼ି ବୁଡିଗଲା । ତା ପରେ କଅଣ କେହି ଜାଣିପାରିଲେ ନାହିଁ ।

ଶେଷରେ ଚେତା ହେଲାଭୁ, ସେମାନେ ଜାଣିପାରିଲେ ଲେଫୋଡ଼େନ୍ ଦ୍ୱୀପରେ ଜଣେ ଧୀବରର କୁଡ଼ିଆରେ ସେମାନେ ଆରାମ୍‌ରେ ଶୋଇଛନ୍ତି । ତେଣେ ନଟିଲସ୍ ଜାହାଜ କପ୍ତାନ୍‌ଙ୍କର ଅବସ୍ଥା କଅଣ ହେଲା, ଏ ଯାଏ କେହି ଜାଣିପାରି ନାହାନ୍ତି ।



# ହୃତ୍ପିଣ୍ଡ ଆରୋପଣ

ଡାକ୍ତର ଗୋପାଳ ଚନ୍ଦ୍ର ପଟ୍ଟନାୟକ

ଉଡ଼ିବା ଦିନେ ଥିଲା ମନୁଷ୍ୟର କଳ୍ପନା, ଆକାଂକ୍ଷା । ତାହା ହେଲା ବାସ୍ତବ । ଆଜି କେବଳ କ'ଣ ଅନ୍ତରୀକ୍ଷ ହେଲାଣି ଏବେ ଦୈନନ୍ଦିନ ବ୍ୟାପାର । ଅଦୃଶ୍ୟ ଅଣୁ ପଦାର୍ଥ ଦେଖାଗଲା ଅଣୁବୀକ୍ଷଣ ଦ୍ୱାରା । ଦୂରବୀକ୍ଷଣ ପାଖେଇ ଆଣିଲା ବହୁ ଦୂର ନକ୍ଷତ୍ରର ଦୃଶ୍ୟାବଳୀ । ଦୂରରେ ଥିବା ଲୋକଙ୍କ ସଙ୍ଗେ କଥାବାର୍ତ୍ତା ହେଲା ଦୂରଭାଷ ଟେଲିଫୋନ ଯୋଗେ । ରେଡ଼ିଓ ଟେଲିଭିଜନ ସାହାଯ୍ୟରେ ଦେଖାଗଲା ଶୁଣାଗଲା ଦୂରଦୂରାନ୍ତର ଘଟଣାବଳୀ । ଗ୍ରହ ଗ୍ରହାନ୍ତର ଗମନାଗମନ ଦିନେ ଥିଲା କଳ୍ପନା । ଏବେ ଏହା ବାସ୍ତବ ହେବାକୁ ଯାଉଛି ।

ଜୀବ, ଜୀବ ମଧ୍ୟରେ, ମଣିଷ, ମଣିଷ ମଧ୍ୟରେ ଅଙ୍ଗ ଅଦଳ ବଦଳ ଥିଲା କିମ୍ବଦନ୍ତୀ, ପୌରାଣିକ ଗଳ୍ପ । ଗଣେଶ ହେଲେ ଗଜାନନ, ଇନ୍ଦ୍ରଙ୍କର ଅଣ୍ଡ କଟି ଯାଇଥିବାରୁ ଛାଗଳ ଅଣ୍ଡ ଯୋଡ଼ାଗଲା ।

ମଣିଷ କେଉଁ ଆଦିମ ଯୁଗରୁ ଉଦ୍ଭିଦ ଜୀବନ ଉପରେ କର୍ତ୍ତୃତ୍ୱ ବିସ୍ତାର କରିଛି । ମଞ୍ଜି ପୋତି ଗଛ ଉଠାଉଛି, ଡାଳ ଖଣ୍ଡେ ପୋତି ଗଛ ବଢ଼ାଉଛି । ଫୁଲ ଫୁଲର ପରାଗ ରେଣୁ ଅଦଳ ବଦଳ କରି ସୃଷ୍ଟି ହୋଇଛି କେତେ ନୂଆ ନୂଆ ଉଦ୍ଭିଦ । ମା'ଗଛର କାଣ୍ଡରେ ଅନ୍ୟ ଗଛର କାଣ୍ଡ ଖଣ୍ଡେ ଯୋଡ଼ି ମନୁଷ୍ୟ କଲମ କରୁଛି, ଉଠାଉଛି କଲମୀ ଗଛ, ଉପୁଜାଇଛି ଉତ୍କୃଷ୍ଟତର କଲମୀ ଫଳ ।

## ଯନ୍ତ୍ର ଅଙ୍ଗରେ କଲମ

ଜନ୍ତୁମାନଙ୍କଠାରେ ମଧ୍ୟ କୃତ୍ରିମ ପ୍ରଣାଳୀ ପ୍ରୟୋଗ କରାଯାଉଛି । ଜନ୍ତୁର କୌଣସି ଅଙ୍ଗରୁ କଟା ଅଂଶ ନେଇ ଅନ୍ୟ

ଅଙ୍ଗରେ ଯୋଡ଼ା ଯାଉଛି ଛୁଡ଼ା ଯାଉଛି । ଗୋଟିଏ ଜନ୍ତୁ ଦେହରେ ଅନ୍ୟ ଜନ୍ତୁର ଅଙ୍ଗ କଲମ କରାଯାଉଛି । ଅତି ସୀମିତ କ୍ଷେତ୍ରରେ ଏହି ପ୍ରକାର ପ୍ରଣାଳୀ ମନୁଷ୍ୟଠାରେ ଏବେ ପର୍ଯ୍ୟନ୍ତ ବ୍ୟବହାର କରାଯାଉ-ଥିଲା । ବଡ଼ ଧରଣର ଦୁର୍ଘଟଣା ଘଟିଲେ, ଦେହର ବହୁତ ଅଂଶର ଚମ ଜଳି ଉଡ଼ିଗଲେ । କ୍ଷତ ସ୍ଥାନରେ ଦେହର ସୁବିଧା ଯାଗାରୁ କିଛି ଚମ ଆଣି ଛେଇ ଦିଆଯାଏ । ନୂଆ ଚମ ସେଠାରେ ଲଗିଯାଏ । ଦେହର ହାଡ଼ ଖଣ୍ଡେ ଭାଙ୍ଗିରୁଜି ଖଣ୍ଡ ଖଣ୍ଡ ହୋଇ ସେଥିରୁ ଖଣ୍ଡ କେତେ ଅକାମୀ ହୋଇଗଲେ ଅବା ବାହାରିଗଲେ ଦେହର ଅନ୍ୟ ଅଙ୍ଗରୁ ଅବା ଆଉ ଜଣକର ଦେହରୁ ହାଡ଼ ଖଣ୍ଡେ କାଟିଆଣି ଯୋଡ଼ ଦିଆଯାଏ । ଏହା ମଧ୍ୟ ବଡ଼ କଥା ନୁହେଁ । ଆଖିର ସ୍ୱଚ୍ଛପଟଳ (କଳାଡ଼ୋଳା) ଚୁରଣ ହେଲେ ଅବା କ୍ଷତିଗ୍ରସ୍ତ ହେଲେ ଅସ୍ୱଚ୍ଛ ହୋଇଯାଏ । ଆଲୋକ ରଶ୍ମି ଆଖି ଭିତରକୁ ଯାଇପାରେ ନାହିଁ । ଫଳରେ ରୋଗୀ ଦେଖିପାରେ ନାହିଁ । ଅନ୍ୟର ସ୍ୱଚ୍ଛପଟଳ ସଂଗ୍ରହ କରି ରୋଗୀର ଚୁର୍ଣ୍ଣ ପଟଳ ସ୍ଥାନରେ ଆରୋପଣ କରାଯାଉଛି, ଏହାଦ୍ୱାରା ଦୃଷ୍ଟିଶକ୍ତିର ପୁନରୁଦ୍ଧାର ସମ୍ଭବ ହୋଇଛି । ରୁଗ୍ଣ ଅକାମୀ ବୃକ୍କ (ମୂତ୍ରଯନ୍ତ୍ର—Kidney) ସ୍ଥାନରେ ଅନ୍ୟର ବୃକକ ଆରୋପଣ କରାଯାଉଛି । ଆରୋପିତ ଅଙ୍ଗ ଗ୍ରହୀତାଙ୍କ ଦେହରେ ଯଥୋଚିତ କର୍ମ ସମ୍ପାଦନ କରୁଛି ଅବା କେତେକ କ୍ଷେତ୍ରରେ ବର୍ଜିତ ହୋଉଛି ।

## ପଶୁମାନଙ୍କ ହୃତ୍‌ପିଣ୍ଡ ଆରୋପଣ

ପୃଥିବୀ ବ୍ୟାପି ବହୁ ଗବେଷଣାଗାରରେ ଆଜି ଏକ ପ୍ରକାର ସଂପରୀକ୍ଷଣ ବହୁକାଳରୁ ଚାଲିଆସିଛି । ତାହା ହେଲା ମନୁଷ୍ୟେତର ଜନ୍ତୁମାନଙ୍କଠାରେ ହୃତପିଣ୍ଡ ଆରୋପଣ କରିବା । ଆରୋପିତ ହୃତପିଣ୍ଡ ନୂଆ ସ୍ଥାନରେ ଯଥୋଚିତ କର୍ମ ସମ୍ପାଦନ କରିବାକୁ ସମର୍ଥ ହୋଇଛି, ଜନ୍ତୁଟି ବଞ୍ଚିପାରିଛି । ଏଥିପାଇଁ ବିଭିନ୍ନ ପ୍ରଣାଳୀ ଉଦ୍ଭାବିତ ହୋଇଛି, ବାସ୍ତବ ପରୀକ୍ଷା କ୍ଷେତ୍ରରେ କେତେକ ଗୃହୀତ, ଆଦୃତ ହୋଇଛି, କେତେକ ପରିତ୍ୟକ୍ତ ହୋଇଛି । ସଫଳତା ନିଷ୍ଫଳତା ମଧ୍ୟ ଦେଇ ହୃତପିଣ୍ଡ ଆରୋପଣ ପରୀକ୍ଷା ଚାଲି ଆସିଛି । ମନୁଷ୍ୟଠାରେ

ଏହାର ପ୍ରୟୋଗ ହେବକି ନାହିଁ, ହୋଇପାରିବକି ନାହିଁ ଏହି ପ୍ରଶ୍ନ ସମସ୍ତ ସମୟରେ ଉଠୁଥିଲା । ତା' ମଧ୍ୟରେ ଉଠୁଥିଲା କେତେ ବାଦ ବିବାଦ, ମତାନ୍ତର ଆଲୋଡ଼ନ । ଏହି ଅନିଶ୍ଚିତ ପରିସ୍ଥିତି କେତେ କାଳ ଚାଲିଥାନ୍ତା କେଜାଣି ?

## ପ୍ରଶାନ୍ତ ସାଗରରେ ଝଡ଼

ସଦାଶାନ୍ତ ପ୍ରଶାନ୍ତ ମହାସାଗରରେ ହଠାତ୍ କେବେ କେବେ ଅତି ବଡ଼ ଝଡ଼ ଉଠେଇଁ ଉଠେ । ସେହିପରି ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ବିଶେଷତଃ ଶଲ୍ୟ ବିଦ୍ୟା କୌଶଳରେ ଅପ୍ରତ୍ୟାଶିତଭାବେ ଝଡ଼ ଜାଗି ଉଠିଲା । ହୃତପିଣ୍ଡ ଆରୋପଣ ଅପରେସନ ବହୁ ଏକ ଲମ୍ଫ ଦେଇ ଉଚ୍ଚ କୋଟି ସ୍ତରରେ ଅଗେଇ ଚାଲିଲା । ଆନ୍ତର୍ଜାତୀୟ ଚିକିତ୍ସା କ୍ଷେତ୍ରରେ ବିଶେଷ ଖ୍ୟାତି ଅର୍ଜନ କରି ନଥିବା ଜଣେ ଯୁବକ ସର୍ଜନଙ୍କ ନେତୃତ୍ୱରେ ମନୁଷ୍ୟଠାରେ ହୃତପିଣ୍ଡ ଆରୋପଣ ପ୍ରୟୋଗ କରାଗଲା । ଏହି କ୍ଷେତ୍ରରେ ଅଗ୍ରଣୀ ହେଲା ଦକ୍ଷିଣ ଆଫ୍ରିକା । କେପ୍‌ଟାଉନର ଗ୍ରୁଟ ସର ହସ୍‌ପିଟାଲ (Groote Schuur Hospital) ରେ ୧୯୬୭ ଡିସେମ୍ବର ମାସ ୩ତାରିଖ ସକାଳେ ମନୁଷ୍ୟ ଠାରେ ପୃଥିବୀର ସର୍ବପ୍ରଥମ ହୃତପିଣ୍ଡ ଆରୋପଣ ଅପରେସନ୍ ସମ୍ପାଦିତ ହେଲା । ନେତୃତ୍ୱ ନେଲେ ପ୍ରଫେସର କ୍ରିଷ୍ଟିଆନ୍ ବର୍ଣ୍ଣାର୍ଡ଼ । ନୂଆ ହୃତପିଣ୍ଡ ଗ୍ରହୀତା ରୋଗୀ ହେଲେ ୫୭ ବର୍ଷର ଦୋକାନଦାର ଲୋଇସ ୱାସକାନସ୍କି । ରୋଗ ତାଙ୍କର ଥିଲା ହୃତ୍ ବିରାମ Heart failure) ଅବସ୍ଥା ସାଂଘାତିକ ରୋଗୀ ମୁମୂର୍ଷୁ । ହୃତପିଣ୍ଡ ଦାତା ହେଲେ ମଟର ଦୁର୍ଘଟଣାରେ ପ୍ରାଣ ହରାଇଥିବା ୨୫ବର୍ଷର ଯୁବତୀ କୁମାରୀ ଡେନିସ୍ ଡାରଭାଲ୍ । ପୂରା ୫ଘଣ୍ଟା କାଳ ଅପରେସନ୍ ଚାଲିଲା ।

ସଦ୍ୟମୃତ ଯୁବତୀଙ୍କର ହୃତ୍‌ପିଣ୍ଡ ବକ୍ଷ ପଞ୍ଜରା ଭିତରୁ କାଟି ରଖାଗଲା । ଗ୍ରହୀତା ବକ୍ଷ ପିଞ୍ଜରାରୁ ରୁଗ୍‌ଣ ହୃତ୍‌ପିଣ୍ଡ କାଟି ନିଆଗଲା । ଦାତାଙ୍କ ହୃତପିଣ୍ଡ ସେହି ସ୍ଥାନରେ ଆରୋପିତହେଲା । ମୁଖ୍ୟତଃ ଏହି ଉଳି ପ୍ରକରଣରେ ହୃତପିଣ୍ଡ ଆରୋପଣ ସମ୍ପାଦିତ ହୁଏ । ଏ ଲେଖାରେ ଏହା

ସରଳ ବୋଲି ମନେ ହେଉଛି । କିନ୍ତୁ ଏଥି ସଙ୍ଗେ ଜଡ଼ିତ ବହୁ ଜଟିଳ ପ୍ରଶ୍ନ, ବହୁ ବିଷମ ସମସ୍ୟା । ଏଥିପାଇଁ ଲୋଡ଼ା ଉଚ୍ଚକୋଟିର ହସ୍ତ କୌଶଳ, ବହୁକାଳ ବ୍ୟାପି ଅଭ୍ୟାସ ଓ ଅନୁଭୂତି । ସର୍ବୋପରି ଆବଶ୍ୟକ ସର୍ଜନଗଣଙ୍କ ମଧ୍ୟରେ ତଥା ସହଯୋଗୀ ଶ୍ରେଣୀଙ୍କ କର୍ମୀମାନଙ୍କ ମଧ୍ୟରେ ଆପସି ବୁଝାମଣା ଓ ସହଯୋଗ ମନୋଭାବ !

## ତିନୋଟି ପ୍ରଧାନ ଅଂଶ

ଜୀବନର ଆଧାର ହେଉଛି ହୃତପିଣ୍ଡ, ଫୁସ୍ ଫୁସ୍ ଓ ମସ୍ତିଷ୍କ । ଏହି ତିନୋଟି ଅଙ୍ଗ ଆମ ଜୀବନର "ତ୍ରିପଦ" (Tripod of life) ଜୀବନର ତ୍ରିନାଥ । ଏହି ତିନୋଟି ଅବିଶ୍ରାନ୍ତ କାମ କରୁଥିବା ପର୍ଯ୍ୟନ୍ତ ଆମେ ବଞ୍ଚିଥାଉଁ । ଅପରେସନ୍ ତ ଘଣ୍ଟା ଲାଗିଲା । ହୃତପିଣ୍ଡ ବିନା ରୋଗୀ ବଞ୍ଚିଲେ କିପରି ? ଏହି ବିଷମ ସମସ୍ୟାର ସମାଧାନ ଅତି ଜଟିଳ । ବର୍ଷ ବର୍ଷ ଧରି ଦଶନ୍ଧି ଦଶନ୍ଧି ଧରି ଯେଉଁ ପରୀକ୍ଷଣ ଚାଲିଥିଲା ସେଥିରୁ ତଥ୍ୟ ସଂଗ୍ରହ କରି ଯଥୋଚିତ ଉପାୟ ଅବଲମ୍ବନ କରାଯାଇଛି । ହୃତପିଣ୍ଡଟି ମୁଖ୍ୟତଃ ଗୋଟିଏ ପମ୍ପ ଯନ୍ତ୍ର । ଦେହର ସବୁ-ଅଙ୍ଗରୁ ରକ୍ତ ଶୋଷିଆଣି ପୁଣି ଦେହର ସବୁ ଆଡ଼କୁ ରକ୍ତ ପମ୍ପ କରିବା ହେଉଛି ହୃତପିଣ୍ଡର କାମ । ଏହିପରି ରକ୍ତ ସ୍ରୋତ ଅନବରତ ଚାଲିଥାଏ । ଏହାଦ୍ୱାରା ଦୂଷିତ ରକ୍ତ ଶୋଧିତ ହେଉଥାଏ । କ୍ଷତିକାରକ କ୍ଷୁଦ୍ରବସ୍ତୁ ନିଷ୍କାସିତ ହେଉଥାଏ । ଖାଦ୍ୟ ସାମଗ୍ରୀ ଓ ଅମ୍ଳଜାନ ଅଙ୍ଗାଙ୍ଗୀରୁ, ତନ୍ତୁ ତନ୍ତୁରେ, କୋଷ କୋଷରେ ପହଞ୍ଚାଇବା ହେଉଥାଏ । ଏହି ରକ୍ତ ପ୍ରବାହ ରକ୍ତ ପରିବହନ କ୍ଷଣେ ମାତ୍ର ବନ୍ଦ ହୋଇ ପାରିବ ନାହିଁ । ହୃତ୍‌ପିଣ୍ଡର କାମକୁ ବନ୍ଦ କରି ରଖିଲେ ମନୁଷ୍ୟକୁ ବଞ୍ଚାଇ ରଖି ହେବ ନାହିଁ । ସେଥିପାଇଁ ଯନ୍ତ୍ରଚାଳିତ କୃତ୍ରିମ ହୃତ୍ ପମ୍ପର ପ୍ରୟୋଗ କରାଯାଏ । ରକ୍ତ ପ୍ରବାହରେ ଗୋଟିଏ ଉପମାର୍ଗ (Bypass) ଯୋଗାଇ ଦିଆଯାଏ । ଏହି କୃତ୍ରିମ ଉପମାର୍ଗରେ ଦେହର ରକ୍ତସ୍ରୋତକୁ ବାଟେଇ ଦିଆଯାଏ । ହୃତ୍‌ପିଣ୍ଡ କିଛିକାଳ ପାଇଁ ଅବସର ପାଏ । ଏହି ଅବସ୍ଥାରେ ହୃତ୍‌ପିଣ୍ଡ ଉପରେ କେତେକ ଅପରେସନ କରାଯାଏ । ହୃତ୍‌ପିଣ୍ଡ ଅବେଦେଇ ମଧ୍ୟ ତଦ୍ରୂପ । କୃତ୍ରିମ ଉପମାର୍ଗ, କୃତ୍ରିମ ହୃତ୍‌ପମ୍ପ ଦ୍ୱାରା ରୋଗୀଙ୍କୁ

ବଞ୍ଚାଇରଖି ରୁଗଣ ହୃତ୍‌ପିଣ୍ଡକୁ କାଟି ବାହାର କରାଯାଏ । ଏହାଛଡ଼ା ଉକ୍ତ କୋଷ୍ଠିର ନିଶ୍ଚେତନ ପ୍ରଣାଳୀ (Anaesthesia) ପ୍ରୟୋଗ କରାଯାଏ । ଶୀତଳୀକରଣ ଏହି ନିଶ୍ଚେତନ ପ୍ରଣାଳୀର ଅନ୍ତର୍ଭୁକ୍ତ ।

## ହୃତ୍‌ପିଣ୍ଡ ସଂରକ୍ଷଣ

ଯେଉଁ ରୋଗୀ ସଦ୍ୟମୃତ ତାହାଙ୍କର ହୃତ୍‌ପିଣ୍ଡଟିକୁ କାଟି ବାହାର କରିବା ମାତ୍ରେ ବଞ୍ଚାଇ ରଖିବାକୁ ହେବ । ଖାଦ୍ୟ ଅମ୍ଳଜାନ ଯୋଗାଣରୁ ବଞ୍ଚିତ ହେଲେ, ଉପଯୁକ୍ତ ସ୍ଥାପିତ ନହେଲେ ତାହାଙ୍କର ହୃତ୍‌ପିଣ୍ଡରେ ଅଳ୍ପକେ ଅପ୍ରତ୍ୟାବର୍ତ୍ତୀ ପରିବର୍ତ୍ତନ ଘଟିବ, କୋଷ କୋଷରେ ଥିବା ଆଦିଜୀବକ (Protoplasm) ଜମାଟ ବାନ୍ଧିଯିବ। ଅନ୍ୟକଥାରେ ଅଙ୍ଗମୃତ୍ୟୁ ଏବଂ କୋଷମୃତ୍ୟୁ (Molecular Death) ଘଟିବ । ଗ୍ରହୀତାଙ୍କ ଦେହରେ ଏହା ଅକାମୀ ହୋଇଯିବ । ସୁତରାଂ ଶୁରୁରେ ତାହାଙ୍କ ହୃତ୍‌ପିଣ୍ଡ କାଟି ବାହାର କରି ସଜୀବାବସ୍ଥାରେ ସାଇତି ରଖିବା ଦୁରୂହ ବ୍ୟାପାର । ଏଥିପାଇଁ କେତେକ ଉପାୟ ଉଦ୍ଭାବନ କରାଯାଇଛି । ଅମ୍ଳଜାନ ଓ ଖାଦ୍ୟ ଯୋଗାଣ ଉଦ୍ଦେଶ୍ୟରେ ହୃତ୍‌ଧମନୀରେ ପୁଷ୍ଟିସାଧକ ପ୍ଲାବନ (Nutrient perfusion) ଅବଶ୍ୟ ଚାଲିଥାଏ । ଆଧୁନିକ ହିମୀକରଣ ପ୍ରଣାଳୀ (Freezing) ଦ୍ୱାରା ଅତି ଶୀତଳ ଅବସ୍ଥାରେ ହୃତ୍‌ପିଣ୍ଡକୁ ରଖାଯାଏ । ଏହି ଶୀତଳ ଅବସ୍ଥାରେ ପ୍ରକୃତିଗତ ପରିବର୍ତ୍ତନ ଘଟେ ନାହିଁ । ହିମୀକରଣ ଓ ପ୍ଲାବନ ଅତ୍ୟାବଶ୍ୟକ ପ୍ରକରଣ । ଏହାଛଡ଼ା ଅପରେସନ ପୂର୍ବରୁ, ଅପରେସନ୍ ବେଳେ, ଅପରେସନ ପରେ ବହୁ ପ୍ରକାର ଆନୁଷଙ୍ଗିକ ପ୍ରଣାଳୀ, ଯନ୍ତ୍ର କୌଶଳ କାମରେ ଲଗାଯାଏ ପରିଶେଷରେ ତାହାଙ୍କର ହୃତ୍‌ପିଣ୍ଡକୁ ଗ୍ରହୀତାଙ୍କ ଦେହରେ ରଖି ଯଥାସ୍ଥାନରେ ଯୋଡ଼ି ସିଲାଇ କରିବାକୁ ହେବ । ଏହା ଅଭିଜ୍ଞ ଅଭ୍ୟସ୍ତ ସର୍ଜନଙ୍କ ପକ୍ଷେ ବଡ଼ କଥା ନୁହେଁ । ସେମାନେ ଏହି ଧରଣର କୌଶଳ ପ୍ରୟୋଗରେ ଆଗରୁ ଅଭ୍ୟସ୍ତ ଓ ଧୁରନ୍ଧର ହୋଇଥାନ୍ତି ।

## ମନୁଷ୍ୟ ହୃତ୍‌ପିଣ୍ଡ ଆରୋପଣ

ଗ୍ରୁଟେସୁର ହସପିଟାଲରେ ସେଦିନ ଯଥାଶସ୍ତ ହୃତପିଣ୍ଡ ଆରୋପଣ ଅପରେସ[redacted]ଂପାଦିତ ହେଲା । ଦାତାଙ୍କ ହୃତ୍‌ପିଣ୍ଡ ଗ୍ରହୀତାଙ୍କ

ଦେହରେ ପୁଣି କାମ କରିବାକୁ ଆରମ୍ଭ କଲା । କୃତ୍ରିମ ହୃତ୍‌ସ୍ପନ୍ଦ ଆଉ ଲୋଡ଼ା ହେଲାନାହିଁ । ଲୁଇସ ୱାସେନ୍‌ସ୍କିଙ୍କ ଦେହରେ ଦାତାଙ୍କର ହୃତ୍‌ପିଣ୍ଡ ନୂଆଘର ବାନ୍ଧିଲା । ରକ୍ତପ୍ରବାହ ସ୍ୱାଭାବିକ ଭାବେ ଚାଲିଲା ।

•

ଅପରେସନ୍ ସଫଳ ହେଲା, ରୋଗୀଙ୍କର ହୋସ ଆସିଲା । ସବୁ ଠିକ୍ ଠାକ୍ । କିନ୍ତୁ ସର୍ଜନମାନଙ୍କର ଦରକଥାଏ । ଗ୍ରହିତାଙ୍କ ଦେହ ଅନ୍ୟର ହୃତ୍‌ପିଣ୍ଡକୁ ଗ୍ରହଣ କରିବ ତ ? ବାହାର ଜିନିଷ ବର୍ଜନ କରିବା ଦେହର ଧର୍ମ । ଦେହର ସ୍ୱାଭାବିକ ପ୍ରତିରୋଧ ଶକ୍ତିର ମୂଳ କଥା ଏହିଠାରେ । ବାହାରର ଜୀବାଣୁ, କୋଷାଣୁ ଅବା କୌଣସି ସାମଗ୍ରୀ ଦେହରେ ପ୍ରବେଶ କଲେ ଦେହ ତା ର ବିରୁଦ୍ଧରେ ସଜାଗ ହୋଇଉଠେ, ପ୍ରତିପିଣ୍ଡ (Antibody) ପ୍ରସ୍ତୁତ କରେ । ଏହି ପ୍ରତିପିଣ୍ଡ ପ୍ରସ୍ତୁତି ଶକ୍ତି ହେଉଛି ପ୍ରତିରୋଧ ଶକ୍ତି ଓ ପ୍ରତିଶୋଧନ ପ୍ରକ୍ରିୟା । (ଏଥିସମ୍ବନ୍ଧେ ମନେ ରଖିବାକୁ ହେବ ଯେ ମୁଖଦ୍ୱାର ଠାରୁ ଆରମ୍ଭ କରି ମଳଦ୍ୱାର ପର୍ଯ୍ୟନ୍ତ ଯେଉଁ ସୁଦୀର୍ଘ ନଳୀ ବ୍ୟାପିଛି ତାହା ଖାଦ୍ୟପେୟର ବାଟ ମାତ୍ର, ଦେହର ଅଭ୍ୟନ୍ତର ନୁହେଁ, ଏହା ଦେହପାଇଁ ବହିର୍ଦେଶ) ଏହି ପ୍ରତି-ଶୋଧନ ଶକ୍ତିକୁ ସାମୟିକଭାବେ ରୋକ ଦେବାପାଇଁ ବ୍ୟବସ୍ଥା କରା-ଯାଇଥିଲା, ଉପଯୁକ୍ତ ଔଷଧ ପ୍ରୟୋଗ କରାଯାଇଥିଲା । ଏଥିରେ ପୁଣି ଆଉ ଗୋଟିଏ ଦିଗ । ପ୍ରତିଶୋଧ ଶକ୍ତି ଅକାମୀ ହେଲେ ଜୀବାଣୁମାନ-ଙ୍କର ପ୍ରାଦୁର୍ଭାବ ବଢ଼ିବ, ରୋଗୀ କୌଣସି ନ କୌଣସି ଜୀବାଣୁଜନିତ ରୋଗଦ୍ୱାରା ଆକ୍ରାନ୍ତ ହେବ । ଅବସ୍ଥା ହେବ ସାଂଘାତିକ । ତେଣୁ ରୋଗୀଙ୍କର ପରିବେଷ୍ଟନୀକୁ ଜୀବାଣୁ ମୁକ୍ତ କରି ରଖିବାକୁ ହେବ । ଅପରେସନ ପ୍ରକୋଷ୍ଠ ପରି ରୋଗୀଙ୍କର ରହିବା କୋଠରୀକୁ ଜୀବାଣୁ ରହିତ କରି ରଖିବାକୁହେବ । ଏଥିପାଇଁ ଉପଯୁକ୍ତ ପ୍ରଣାଳୀର ପ୍ରୟୋଗ କରାଯାଇଥିଲା ।

ପୁଣି ଆଉ ଗୋଟିଏ ଆଶଙ୍କା ଥିଲା । ରୋଗୀଙ୍କର ରୁଗ୍‌ଣ ହୃତ୍‌ପିଣ୍ଡ ବହୁକାଳରୁ ଆଂଶିକଭାବେ ଅଚଳ ଥିଲା । ଏହି ଅଚଳତା କ୍ରମେ ବଢ଼ି ଚାଲିଥିଲା । ଏହାଫଳରେ ତାଙ୍କର ଫୁସ୍‌ଫୁସ୍ ତଥା ଯକୃତ୍ କିୟତ୍ ପରିମାଣରେ ଦୁର୍ବଳ ହୋଇପଡ଼ିଥିବାର ଆଶଙ୍କା । ତାହା-ହେଲେ ନୂଆ ହୃତ୍‌ପିଣ୍ଡ ନୂଆ ସ୍ଥାନରେ ସ୍ୱାଭାବିକ ଭାବେ କାମ କଲେ ମଧ୍ୟ

ରୁଗ୍ଣ ଫୁସ୍ଫୁସ୍ ଯୋଗୁଁ ଯଥୋଚିତ ଅମ୍ଳଜାନ ପାଇବ ନାହିଁ, ଅଙ୍ଗାରମ୍ଳଜାନ ନିଷ୍କାସିତ ହେବନାହିଁ । ସେହିପରି ରୁଗ୍ଣ ଯକୃତ୍ ଯୋଗୁ ସୁଶୋଧିତ ଖାଦ୍ୟ ପାଇବ ନାହିଁ । ଫଳରେ ନୂଆ ହୃତ୍ପିଣ୍ଡ କ୍ରମେ ଦୁର୍ବଳ ହୋଇ ପୁଣି ରୁଗ୍ଣ ହୋଇଯିବ, ପରିଶେଷରେ ଅକାମୀ ହୋଇଯିବ, ସବୁ ଚେଷ୍ଟା ବ୍ୟର୍ଥ ହୋଇଯିବ ।

## ଜୀବନ ପାଇଁ ଜୀବନ

ସାହାହେଉ ୩ଦିନ ପରେ ରୋଗୀ ବିଛଣାରେ ଉଠି ବସିଲେ, ନିଜେ ଖାଇପିଇ ପାରିଲେ । ହେଉନା କାହିଁକି ସେ ପୃଥିବୀ ବ୍ୟାପି ଟେଲିଭିଜନ ସାକ୍ଷାତକାରରେ ଯୋଗଦେଲେ । ପ୍ରଦର୍ଶ ବଦନରେ ସେ ଏକ ଅମରବାଣୀ ଶୁଣାଇଲେ—"ଜୀବନର ଉଦ୍ଦେଶ୍ୟ ଜୀବନ"(Life is for living) । ଏହିପରି ପ୍ରଶ୍ନର ପ୍ରଖର ଆଲୋକ ପାତ ଭିତରେ ତାଙ୍କର ଚିକିତ୍ସା ଚାଲିଲା । ପୃଥିବୀର ଜନସାଧାରଣ ଆଗ୍ରହାନ୍ୱିତ । ତାଙ୍କର ଆରୋଗ୍ୟ ପ୍ରତି ସମସ୍ତଙ୍କର ତୀକ୍ଷ୍ଣ ଦୃଷ୍ଟି ପଡୁଥାଏ । ଦୁଇସପ୍ତାହ ଏହିପରି ଚାଲିଗଲା । ସମସ୍ତେ ଆଶାନ୍ୱିତ ହେଲେ । କିନ୍ତୁ ଅପରେସନର ୧୫ଦିନ ପରେ (୧୮।୧୨।୧୯୬୭) ଅବସ୍ଥା ଖରାପ ଆଡ଼କୁ ଆସିଲା । ନିମୋନିଆ (ଫୁସ୍ଫୁସ୍ ପ୍ରଦାହ) ହୋଇଛି ବୋଲି ଡାକ୍ତରମାନେ ସନ୍ଦେହ କଲେ । ଯଥାବିଧି ପେନିସିଲିନ ଇଞ୍ଜେକସନ ପ୍ରୟୋଗ କରାଗଲା । ଚିକିତ୍ସକ ବୃନ୍ଦଙ୍କର ପୁଣି ଆଶଙ୍କା ଉପୁଜିଲା—ଗ୍ରହୀତାଙ୍କ ଦେହ ନୂତନ ହୃତ୍ପିଣ୍ଡକୁ ବର୍ଜନ କରୁଛି କି ? ପରିଶେଷରେ ସବୁ ପ୍ରୟାସ ବ୍ୟର୍ଥ ହେଲା । ଲୋଇସ ୱାସକାନସ୍କିଙ୍କର ନୂତନ ଜୀବନର ପରିସମାପ୍ତି ହେଲା ତା ୨୧।୧୨।୧୯୬୭ ଦିନ । ମୃତ୍ୟୁପରେ ଶବ ବ୍ୟବଚ୍ଛେଦରେ ଦେଖାଗଲା ବର୍ଜନ ଆଶଙ୍କା ଠିକ୍ ନୁହେଁ । ବରଂ ପ୍ରମାଣ ମିଳିଲା ଯେ ରୋଗୀଙ୍କର ମୃତ୍ୟୁ ହୋଇଛି ନିମୋନିଆ ଯୋଗୁ, ଫୁସ୍ଫୁସ୍ର ପୂର୍ବ ଦୁରବସ୍ଥା ଯୋଗୁ ।

ରୋଗୀ ବଞ୍ଚିଲେ ନାହିଁ, କିନ୍ତୁ ଅପରେସନ୍ ଫଳପ୍ରଦ ହୋଇଛି, ଦିଗ୍ ପ୍ରଦର୍ଶକ ହୋଇଛି । ବର୍ତ୍ତମାନରେ ଅପରେସନ ସମ୍ପାଦିତ ହେଲା, ରୋଗୀ ୧୮ଦିନ ବଞ୍ଚିଲେ, ସ୍ୱାଭାବିକ ଜୀବନଯାପନ କଲେ । ଏହା ଏକ ଐତିହାସିକ ଘଟଣା, ଚିକିତ୍ସା କ୍ଷେତ୍ରରେ ଏହା ଯୁଗାନ୍ତର ସୃଷ୍ଟି କରିଛି ।

ପ୍ରଫେସର ବର୍ଣ୍ଣାଡ୍‌ଙ୍କ ଦଳ ହତୋତ୍ସାହ ହେଲେ ନାହିଁ, ପଛେଇଲେ ନାହିଁ । ଅନ୍ୟ ଦେଶର ହୃତ୍‌ପିଣ୍ଡ ସର୍ଜନମାନେ ମଧ୍ୟ ଜାଗି ଉଠିଲେ । କଏ ଦେଲେ ସାଧୁବାଦ କଏ ଦେଲେ ଅପବାଦ । ପୃଥିବୀବ୍ୟାପି ପତ୍ରିକାରେ ବହୁ ବାଦ ବିବାଦ, ଯୁକ୍ତି ତର୍କ ଚାଲିଲା । ଆମେରିକା ଯୁକ୍ତ-ରାଷ୍ଟ୍ରର ନ୍ୟୁୟର୍କସ୍ଥିତ ବ୍ରୁକଲିନ୍ ମାଇମୋନେଡସ୍ ହସ୍‌ପିଟାଲରେ ଡକ୍ଟ-ରାସର ଦ୍ୱିତୀୟ ହୃତ୍‌ପିଣ୍ଡ ଆରୋପଣ ଅପରେସନ ସମ୍ପାଦିତ ହେଲା ୨½ ବର୍ଷ ବୟସର ଶିଶୁଠାରେ ତା ୬।୧୨।୧୯୬୭ ଦିନ । ଅପରେସନ ଯଥାରୀତି ସଫଳତା ସହ ଶେଷ ହେଲା । ପିଲାଟି ମାତ୍ର ୬ ଘଣ୍ଟା ବଞ୍ଚିଲା ।

## ଫିଲିପ୍ ବ୍ଲେବର୍ଗ

ତେଣେ କେପ୍‌ଟାଉନ୍‌ଠାରେ ପୁଣି ସେହି ଗ୍ରୁଟେସୁର ହସ୍‌ପିଟାଲରେ ଆଉ ଗୋଟିଏ ହୃତ୍‌ପିଣ୍ଡ ଆରୋପଣ ଅପରେସନ କରିବାକୁ ସୁଯୋଗ ମିଳିଲା । ପୁଣି ନେତୃତ୍ୱ ନେଲେ ସେହି ପୂର୍ବ ପରିଚିତ ପ୍ରଫେସର ବର୍ଣ୍ଣାଡ୍ ।

ତାରିଖ—୨।୧।୧୯୬୮ ପ୍ରଥମ ଅପରେସନର ୩୫ ଦିନପରେ ।

ଗ୍ରହୀତା ରୋଗୀ—ଡାକ୍ତର ଫିଲିପ୍ ବ୍ଲେବର୍ଗ, ଦନ୍ତଚିକିତ୍ସକ, ବୟସ ୫୮ ବର୍ଷ ରୋଗ—ହୃଦାଘାତ (Heart attack-Coronary clot)୧୮ ବର୍ଷ ତଳେ ପ୍ରଥମ ହୃଦାଘାତ ଆରମ୍ଭ ହୋଇଥିଲା, ଥରକୁ ଥର ହୃଦାଘାତ ଯୋଗୁଁ ହୃତ୍‌ପିଣ୍ଡ ମିତ୍ରୁପ୍ରମାଣ ।

ଦାତା—କ୍ଲାଇବ ହାଉପ୍‌ଟ, ଦକ୍ଷିଣ ଆଫ୍ରିକାର କୃଷ୍ଣାଙ୍ଗ ଯୁବକ, ମୃତ୍ୟୁର କାରଣ ଥିଲା ମସ୍ତିଷ୍କରେ ଅର୍ବୁଦ (ଆବୁ Tumobl)

ଯଥାବିଧି ଅପରେସନ ହେଲା । କୌଶଳ ଓ ପଦ୍ଧତିରେ ଅଳ୍ପ ପରିବର୍ତ୍ତନ କରାଗଲା । ଏଥର ସର୍ଜନ ଚିକିତ୍ସକଗଣ, ସେବିକା ସହାୟକବୃନ୍ଦ ପୂର୍ବ ଅନୁଭବରୁ ଯଥୋଚିତ ଶିକ୍ଷାଲାଭ କରି ଏହି ନୂତନ ରୋଗୀ ଚିକିତ୍ସାରେ ବିଶେଷ ତତ୍ପର ହେଲେ । ସୁରୁଖୁରୁରେ ହୃତ୍‌ପିଣ୍ଡ ଆରୋପଣ ଅପରେସନ ସମ୍ପାଦିତ ହେଲା । ନୂତନ ହୃତ୍‌ପିଣ୍ଡ

ଆପେ ଆପେ କାମ କରିବାକୁ ଆରମ୍ଭ କଲା । କୃତ୍ରିମ ଉପସର୍ଗ ଦ୍ୱାରା ରକ୍ତ ସମ୍ପାଦନ ଅଧିକ କାଳ ରଖିବାକୁ ପଡ଼ିଲା ନାହିଁ । ଗ୍ରହୀତା ରୋଗୀଙ୍କ ଦେହରେ ତାହାଙ୍କର ହୃତପିଣ୍ଡ ସ୍ୱାଭାବିକଭାବେ କାମ କରି ଚାଲିଲା । ଡାକ୍ତର ବ୍ଲେବର୍ଗ କ୍ରମେ ଆରୋଗ୍ୟ ଲାଭକଲେ । ସଂପୂର୍ଣ୍ଣ ସୁସ୍ଥାବସ୍ଥାରେ ଏବେ ସେ ନିଜଘରେ ଅବସର ବିନୋଦନ କରୁଛନ୍ତି । ଗତ ଜାନୁଆରୀ (୧୯୬୮) ୨ତାରିଖ ଦିନ ଅପରେସନ୍ ହୋଇଥିଲା । ଏହି ଗର୍ଭ ୫ମାସରୁ ଅଧିକା କାଳ ସେ କେବଳ ବଞ୍ଚି ନାହାନ୍ତି, ସେ ସାମାଜିକ କାର୍ଯ୍ୟାବଳୀରୁ ଓହରି ନାହାନ୍ତି । କଲିକତା 'ଷ୍ଟେଟ୍ସମ୍ୟାନ' ଦୈନିକ ପତ୍ରିକାରେ (୨୬।୫।୧୯୬୮) ତାଙ୍କର ଆଲୋକ ଚିତ୍ରଟିଏ ପ୍ରକାଶିତ ହୋଇଛି । ରଗବି(Rugby) ଖେଳାଳୀମାନଙ୍କ ଗହଣରେ ଏହି ଫୋଟଟି ନିଆଯାଇଛି । ପୂର୍ବେ ସେ ନିଜେ ରଗ୍‌ବି ଟିମର କାପ୍ଟେନ୍ ଥିଲେ । ପ୍ରତିଯୋଗୀତା ଖେଳ ପୂର୍ବରୁ ଡାକ୍ତର ବ୍ଲେବର୍ଗ ପ୍ରଥମେ ରଗ୍‌ବି ବଲଟିକୁ ଫୋପାଡ଼ିବାର ଚିତ୍ର ଦର୍ଶାଯାଇଛି ।

## ଉଚ୍ଚକୋଟିର ସାଫଲ୍ୟ

ଅଭିନବ ଏହି ଅପରେସନ ପରେ ଡାକ୍ତର ବ୍ଲେବର୍ଗ ୫ମାସରୁ ଅଧିକ କାଳ ବଂଚିଛନ୍ତି, ସୁସ୍ଥ ସ୍ୱାଭାବିକ ଜୀବନ ଯାପନ କରୁଛନ୍ତି । ଏହି ଉଚ୍ଚକୋଟିର ସାଫଲ୍ୟ ଅର୍ଜନ କରିଥିବାରୁ ପ୍ରଫେସର ବର୍ଣ୍ଣାର୍ଡ୍ ପୃଥିବୀବ୍ୟାପି ଖ୍ୟାତିଲାଭ କରିଛନ୍ତି । ତାଙ୍କ ଦେଶ ଦକ୍ଷିଣ ଆଫ୍ରିକାର ସର୍ବଶ୍ରେଷ୍ଠ କୃତି ପୁରସ୍କାର 'ବେଇଜ୍ ଆୱାର୍ଡ୍ ୫,୦୦୦ ପାଉଣ୍ଡ) ପାଇଛନ୍ତି । ସବୁଆଡ଼ୁ ସାଧୁବାଦ ମିଳୁଛି । କିନ୍ତୁ ଏଥିସଙ୍ଗେ କେତେକ ନୈତିକତାର ପ୍ରଶ୍ନ, କେତେକ ମାନବିକତାର ପ୍ରଶ୍ନ, ସଂଶୟ ଉଠୁଛି । ବହୁ ପତ୍ର ପତ୍ରିକାରେ ଆଲୋଚନା ସମାଲୋଚନା ଚାଲିଛି । ଦୈନିକ "ସମାଜ"ର ସାପ୍ତାହିକ ସାହିତ୍ୟ ଆଲୋଚନାରେ (୨।୬।୧୯୬୮) ଏଥି ସମ୍ବନ୍ଧେ କେତେକ ବିଷୟ ବସ୍ତୁର ଅବତାରଣା ଶ୍ରୀ ମନୋଜ ଦାସ କରିଛନ୍ତି । ତାହା ଉଦାହରଣ ସ୍ୱରୂପ ଦ୍ରଷ୍ଟବ୍ୟ ।

ପ୍ରଫେସର ବର୍ଣ୍ଣାର୍ଡ୍‌ଙ୍କ ଏହି ଅଗ୍ରପଦକ୍ଷେପ ପରେ ଆଜି କେତୋଟି ହୃତ୍‌ପିଣ୍ଡ ଆରୋପଣ ଅପରେସନ ଅନ୍ୟାନ୍ୟ ଦେଶରେ କରାଯାଇଛି । ଆଜି ପର୍ଯ୍ୟନ୍ତ (୭-୬-୧୯୬୮) ସର୍ବମୋଟ ସଂଖ୍ୟା ହେଲା

୨୦ । ସେମାନଙ୍କ ମଧ୍ୟରୁ ଏପର୍ଯ୍ୟନ୍ତ ବଞ୍ଚିଛନ୍ତି ୭ ଜଣ ଆମେରିକା ଯୁକ୍ତରାଷ୍ଟ୍ରରେ, ୨ଜଣ ଫ୍ରାନ୍ସରେ, ଇଂଲଣ୍ଡ ବ୍ରାଜିଲ୍, ଦକ୍ଷିଣ ଆଫ୍ରିକାରେ ଜଣେ ଜଣେ । ଲଣ୍ଡନର ହାର୍ଟ ଇନ୍‌ଷ୍ଟିଚ୍ୟୁଟ୍‌ରେ ତା ୩-୫-୧୯୬୮ ଦିନ ଫ୍ରେଡ଼େରିକ ଉଏଷ୍ଟଙ୍କଠାରେ ହୃତ୍‌ପିଣ୍ଡ ଆରୋପଣ ଅପରେସନ୍ କରାଯାଇଥିଲା । ମାସକରୁ ଅଧିକ କାଳ ସେ ବଞ୍ଚିଛନ୍ତି, ସୁସ୍ଥ ଅଛନ୍ତି । "ଷ୍ଟେଟ୍‌ସ୍ମ୍ୟାନ" ଦୈନିକ ପତ୍ରିକାରେ (୩୧-୫-୧୯୬୮) ତାଙ୍କର ଗୋଟିଏ ଆଲୋକ ଚିତ୍ର ପ୍ରକାଶିତ ହୋଇଛି । ଡାକ୍ତରଙ୍କର ଷ୍ଟେଥେସକୋପ୍ କାନରେ ଦେଇ ସେ ନିଜର ନୂତନ ହୃତ୍‌ପିଣ୍ଡର ଚଳନ ଶବ୍ଦ ଶୁଣୁଛନ୍ତି । ଫ୍ରାନସରେ ପାଦ୍ରୀ ଫାଦର ବୌଲନଙ୍କଠାରେ ମାସକ ତଳେ ଏହି ଅପରେସନ ହୋଇଥିଲା । ସେ ଆରୋଗ୍ୟ ପଥରେ ଅଗ୍ରସର ହେଉଛନ୍ତି ବୋଲି ଖବର ।

ଆମ ଦେଶ ବମ୍ବେଇରେ କିଙ୍ଗ୍ ଏଡ଼ୱାର୍ଡ଼ ମେମୋରିଆଲ ହସପିଟାଲରେ ଏହାପରେ ଗୋଟିଏ ହୃଦ୍‌ରୋପଣ ଅପରେସନ କରାଯାଇଥିଲା ତା ୧୭-୨-୧୯୬୮ ଦିନ । ଡାକ୍ତର ପି. କେ. ସେନ ନେତୃତ୍ୱ ନେଇଥିଲେ । ସଫଳତା ସହିତ ଅପରେସନ ସମ୍ପାଦିତ ହୋଇଥିଲା । କିନ୍ତୁ ଗ୍ରହୀତା ରୋଗୀ ମାତ୍ର ୭ଘଣ୍ଟା ବଞ୍ଚିଲେ । ଅପରେସନର ଦୃଶ୍ୟାବଳି ରଙ୍ଗିନ୍ ଆଲୋକ ଚିତ୍ରରେ ପ୍ରକାଶିତ ହୋଇଛି ।
(Illustrated Weekly 15-5 1968)

## ସାହସିକତା ମୂଳ

ଆଦମ କାଳରୁ ଚିକିତ୍ସା କ୍ଷେତ୍ରରେ ବହୁ ସଂଶୟ, ବହୁ ସନ୍ଦେହ ଉପୁଜିଛି । ଭେଦ ଦେଇ ଝାଡ଼ା କରାଇବା ମାମୁଲି କଥା । ତେବେ ରୋଗୀ ଭେଦ ସମ୍ଭାଳ ପାରିବ ତ ? ଭେଦଝାଳ କେତେକ ରୋଗୀ ତ ମରିଯାଇଛନ୍ତି । କବିତା ଶ୍ରବଣ କବିରାଜ କହିଥିଲେ ବିଷଧର ସର୍ପକୁ ଟେକେଇ ପାର, କିନ୍ତୁ "ମଳସ୍ରୋତଂ ନ ରୁକ୍ଷଯେତ୍" । ଅସ୍ତ୍ର ଚିକିତ୍ସା ବିନା ରୋଗୀ ଭଲ ହେବ ନାହିଁ । କିନ୍ତୁ ରୋଗୀ ଅପରେସନ ସମ୍ଭାଳି ପାରିବଟି ? ଅପରେସନ ନକଲେ ରୋଗୀର ମୃତ୍ୟୁ ସୁନିଶ୍ଚିତ । ଅପରେସନ କିନ୍ତୁ ଉପାୟାବଦ୍ଧ । କ୍ଷୀଣ ଆଶା

ସେମାନେ ସାହସୀ, ସୁଦକ୍ଷ, ଅଭିଜ୍ଞ ସର୍ଜନମାନେ ପଛାନ୍ତି ନାହିଁ । ଏହିପରି ଦକ୍ଷତା ସହ ସାହସିକତା ଯୋଗୁଁ ଶଲ୍ୟ ଚିକିତ୍ସା ଅତି ଏକଚାଟିଆ ଆଗେଇ ଚାଲିଛି । ଏହିପରି ପ୍ରଶ୍ନ ହୃତ୍‌ପିଣ୍ଡ ଆରୋପଣ କ୍ଷେତ୍ରରେ ଉଠିବା ସ୍ୱାଭାବିକ । ଆଶଙ୍କା ଅତ୍ୟଧିକ, ଆଶା ଅତି କ୍ଷୀଣ । ଉପୁରର ପଚାରିଥିଲେ ମନୁଷ୍ୟଠାରେ ହୃଦାରୋପଣ ଅପରେସନ ଅଦୌ ହୋଇ ନଥାନ୍ତା । କିନ୍ତୁ ସାହସ ବାନ୍ଧି ଅପରେସନ କରାଗଲା । କେତେକ ତ ବଞ୍ଚିଲେ ।

ଆଉ ଗୋଟିଏ ଜଟିଳ ପ୍ରଶ୍ନ । ମୃତ ବ୍ୟକ୍ତିର ହୃତ୍‌ପିଣ୍ଡ ବ୍ୟବହାର କରି ଆଉ ଜଣକର ଜୀବନ ରକ୍ଷା କରିବାରେ କୌଣସି ଆପତ୍ତି ଅଭିଯୋଗର ଅବକାଶ ନାହିଁ । କିନ୍ତୁ ଏହି ଅପରେସନ ପାଇଁ ଆବଶ୍ୟକ ସଦ୍ୟମୃତ ଦାତାଙ୍କର ସୁସ୍ଥ ହୃତ୍‌ପିଣ୍ଡ । ମୃତ୍ୟୁପରେ ଅପ୍ରତିବର୍ତ୍ତୀ ପରିବର୍ତ୍ତନ ପୂର୍ବରୁ ଦାତାଙ୍କର ହୃତପିଣ୍ଡ ତାଙ୍କ ଦେହରୁ କାଢ଼ି ଆଣିବା ଦରକାର । ନଚେତ୍ ସେହି ହୃତପିଣ୍ଡ ଅନୁପଯୋଗୀ ଅକାମୀ ହେବ । କେବେ ମୃତ୍ୟୁ ହୋଇଛି ବୋଲି ଠିକ୍ କରିବ କିଏ ? ମୃତ୍ୟୁର ମାପ କାଠି କଣ ?

## ହୃତପିଣ୍ଡ ମୃତ ନା ଜୀବିତ

ନିଶ୍ୱାସ ବନ୍ଦ ହୋଇ ନାଡ଼ି ନମିଳିଲେ, ଛାତିରେ ଧୂକ୍‌ଧୂକ୍ ଦେଖା ନଗଲେ ହାତକୁ ନ ଲାଗିଲେ ମୃତ୍ୟୁ ହୋଇଛି ବୋଲି ସାଧାରଣତଃ ଧରାଯାଏ । ଡାକ୍ତର ଆସି ଶେଷ ପରୀକ୍ଷା କରନ୍ତି । କଳା ଡୋଳାରେ ଆଙ୍ଗୁଠି ଛୁଆଁଇ ଦେଖନ୍ତି । ଜୀବିତାବସ୍ଥାରେ ପତା ପଡ଼ିଯାଏ । ମୃତ୍ୟୁପରେ ଏହା ହୁଏ ନାହିଁ । ଡାକ୍ତର ଷ୍ଟେଥିସ୍କୋପ୍ ସାହାଯ୍ୟରେ ହୃତ୍‌ପିଣ୍ଡର ଧୂକ୍‌ଧୂକ୍ ଶୁଣିବାକୁ ଚେଷ୍ଟା କରନ୍ତି । ଆଖିପତା ନପଡ଼ିଲେ ଧୂକଧକ ଶୁଣା ନଗଲେ ଡାକ୍ତର ପରିଶେଷରେ ମୃତ୍ୟୁ ଘୋଷଣା କରନ୍ତି । ତେବେ ମଧ୍ୟ ଏହି ପ୍ରକାର ଶେଷ ନିଷ୍ପତ୍ତି ଯଥାର୍ଥ ନୁହେଁ । କୃତ୍ରିମ ଶ୍ୱାସ ପ୍ରଣାଳୀ ସହ ହୃତପିଣ୍ଡ ମର୍ଦ୍ଦନ କରି ବନ୍ଦ ହୋଇ ଯାଇଥିବା ହୃତ୍‌ପିଣ୍ଡକୁ ପୁଣି ଜଗାଇ ଦିଆଯାଉଛି । (ଛାତିର ଭିତର କଥା ପୁସ୍ତିକାର ୪୯, ୫୦, ୫୧, ୫୨ ପୃଷ୍ଠା ଦ୍ରଷ୍ଟବ୍ୟ) । ହୃତପିଣ୍ଡରେ ଉତ୍ତେଜକ ଔଷଧ ଇଞ୍ଜେକସନ ଦେଲେ ଅବା ବିଦ୍ୟୁତ ପ୍ରୟୋଗ କଲେ

ତଦ୍ରୂପ ଫଳ ମିଳୁଛି । ଉପଯୁକ୍ତ ବ୍ୟବସ୍ଥା ଦ୍ୱାରା ବନ୍ଦ ହୋଇଯାଇଥିବା ହୃତ୍‌ପିଣ୍ଡ ପୁଣି ଚାଲିବ, ରୋଗୀ ପୁଣି ଜିଇ ଉଠିବ । ଏକଥା କାଳ୍ପକ ମୃତ୍ୟୁପ୍ରତି ପ୍ରଯୁଜ୍ୟ । କୋଷ କୋଷରେ ଥିବା ଆଦ୍ୟଜୀବକ ଜମାଟ ବାନ୍ଧିଯାଇ କୋଷ ମୃତ୍ୟୁ ଘଟିଗଲେ ହୃତ୍‌ପିଣ୍ଡକୁ ଆଉ ଜିଆଇ ହେବ ନାହିଁ । ତେବେ ବନ୍ଦ ହୋଇ ଯାଇଥିବା ହୃତପିଣ୍ଡକୁ ପୁଣି ଜଗାଇ ଚଳାଇ ହେବକି ନାହିଁ, ଏକଥା କିପରି ଜଣାଯିବ ? ଏହି ପ୍ରଶ୍ନଟି ଜଟିଳ । ଅଭିଜ୍ଞ ଅନୁଭବୀ ଚିକିତ୍ସକମାନଙ୍କର ମତ ଅନୁସାରେ ଯେଉଁ ପର୍ଯ୍ୟନ୍ତ ବିଦ୍ୟୁତ ପ୍ରୟୋଗ ଦ୍ୱାରା ହୃତ୍‌ପିଣ୍ଡରେ ପ୍ରତିକ୍ରିୟା ମିଳୁଥିବ ସେ ପର୍ଯ୍ୟନ୍ତ ଆଶା ଅଛି ବ୍ୟକ୍ତିକୁ ବଞ୍ଚାଇ ହେବ । ଏହି ପ୍ରତିକ୍ରିୟା ନମିଳିଲେ ହୃତ୍‌ପିଣ୍ଡ ପ୍ରକୃତରେ ମୃତ ବୋଲି ଗଣାଯିବ । ଏହି ମାନଦଣ୍ଡରେ ବିଚାର କରି ବ୍ୟକ୍ତିର ମୃତ୍ୟୁ ହୋଇଛି ବୋଲି ବିବେଚନା କରିବା ପରେ ସେହି ବ୍ୟକ୍ତିର ହୃତ୍‌ପିଣ୍ଡ କାଢ଼ି ଆଣି ଅନ୍ୟଠାରେ ଆରୋପଣ କଲେ କୌଣସି ପ୍ରକାର ଆପତ୍ତି ଅଭିଯୋଗର ସ୍ଥାନ ନାହିଁ । କିନ୍ତୁ ବିଦ୍ୟୁତ୍ ପ୍ରେରଣା ଦ୍ୱାରା ଯେଉଁ ହୃତ୍‌ପିଣ୍ଡ ଆଉ ପ୍ରଭାବିତ ହେଉନାହିଁ, ତାହା ସମ୍ପୂର୍ଣ୍ଣ ମୃତ, ତାହା ଅକାମୀ । ହୃତ୍‌ପିଣ୍ଡ ଆରୋପଣ ଅପରେସନ ପାଇଁ ତାହା ଅନୁପଯୋଗୀ । ଗ୍ରହୀତାଙ୍କ ଦେହରେ ସେପରି ହୃତ୍‌ପିଣ୍ଡ ଚାଲୁ ହେବ ନାହିଁ; ଅପରେସନ ନିରର୍ଥକ ହେବ । ତେବେ କଥା ହେଉଛି ଯେଉଁସବୁ ଅପରେସନ ହୋଇଗଲାଣି, ଯେଉଁଥିରେ ଦାତାଙ୍କର ହୃତ୍‌ପିଣ୍ଡ ଗ୍ରହୀତାଙ୍କ ଦେହରେ ପୁଣି ଚାଲୁ ହେଲା, ସେ ହୃତ୍‌ପିଣ୍ଡ ପ୍ରକୃତରେ ମରି ନଥିଲା ଅର୍ଥାତ୍ ଦାତା ପ୍ରକୃତରେ ମରି ନଥିଲେ । ମଡ଼ା ପୂର୍ବରୁ ତାଙ୍କର ହୃତ୍‌ପିଣ୍ଡ କାଢି ନିଆଯାଇଛି । ଏହା ଅତୀବ ଶୋଚନୀୟ ବ୍ୟାପାର । ଦୁଃଖଦାୟକ ଶୋକାବହ ଘଟଣା ।

ପକ୍ଷାନ୍ତରେ ଦେଖିବାକୁ ହେବ । ହୃତ୍‌ପିଣ୍ଡ ସୁସ୍ଥ ଥାଇ ଏପରି ରୋଗ ହୋଇଛି, ରୋଗୀର ରୋଗ ଏପରି ଅବସ୍ଥାରେ ପହଂଚିଛି ଯେ ପ୍ରତ୍ୟାବର୍ତ୍ତନ ଅସମ୍ଭବ, ମୃତ୍ୟୁ ସୁନିଶ୍ଚିତ । ଅବା ଦେହର ଅନ୍ୟ କୌଣସି ପ୍ରାଣାଧାର ଅଙ୍ଗ ଏପରିଭାବେ କ୍ଷତବିକ୍ଷତ ହୋଇଛି ଯେ ଚିକିତ୍ସା ନିରର୍ଥକ, ଆରୋଗ୍ୟ ଅସମ୍ଭବ, ମୃତ୍ୟୁ ସୁନିଶ୍ଚିତ । ମଟର ଦୁର୍ଘଟଣାରେ ମୁଣ୍ଡଟି ଚିପି ହୋଇ ଧୁରପୁର ଚେପ୍‌ଟା ହୋଇ ଯାଇଛି,

ମସ୍ତିଷ୍କ ସମ୍ପୂର୍ଣ୍ଣ ଭାବେ କ୍ଷତ ବିକ୍ଷତ ହୋଇ ବାହାରେ ଫୋପାଡ଼ି ହୋଇ ପଡ଼ିଛି । ଏପରି ଆହତ ବ୍ୟକ୍ତିଙ୍କୁ ତ ଆଉ ବଞ୍ଚାଇ ହେବନାହିଁ । ସେହି ବ୍ୟକ୍ତିଙ୍କର (ଦାତାଙ୍କର) ଜୀବିତ ସୁସ୍ଥ ସଜୀବ ହୃତପିଣ୍ଡଟିକୁ କାଢ଼ିନେଇ ଗ୍ରହୀତାଙ୍କଠାରେ ଆରୋପଣ କଲେ ଆପତ୍ତି ହେବ କାହିଁକି ? ଅନୈତିକ, ଅବୈଧାନିକ, ଅମାନବିକ ବୋଲି କାହିଁକି ବିବେଚିତ ହେବ ? ଏହାଏକ ମସ୍ତବଡ଼ ଗୋଲକଧନ୍ଦା :

ଆଶା କରାଯାଉଛି, କୃତ୍ରିମ ହୃତପିଣ୍ଡ ଅକାମି ହୃତ୍‌ପିଣ୍ଡର ସ୍ଥାନ ପୂରଣ କରିବ । କଳନା କରାଯାଉଛି ଅନତିବିଳମ୍ବେ ନିକଟ ଭବିଷ୍ୟତରେ କାରଖାନାମାନଙ୍କରେ କୃତ୍ରିମ ହୃତ୍‌ପିଣ୍ଡ ଯଥେଷ୍ଟ ପରିମାଣରେ ପ୍ରସ୍ତୁତ ହେବ । କଳ୍ପିତ ଏହି କୃତ୍ରିମ ହୃତ୍‌ପିଣ୍ଡ କାମିକା ହେଲେ ହୃତ୍‌ପିଣ୍ଡ ଆରୋପଣ ଅପରେସନ ଆଉ ଆବଶ୍ୟକ ହେବ ନାହିଁ । ଗୋଲକ ଧନ୍ଦାର ନିଷ୍ପତ୍ତି ଆଉ ଲୋଡ଼ା ହେବନାହିଁ ।



# କୋଇଲି ଘଡ଼ି

ଶ୍ରୀ ମହେଶ ଚନ୍ଦ୍ର ମହାପାତ୍ର

ଇଉରୋପ ମହାଦେଶରେ ସୁଇଜରଲଣ୍ଡ ଗୋଟିଏ ଛୋଟ ଦେଶ। ସେ ଦେଶର ଏକ ବଣ ଭିତରେ ସାନ ଗାଁଟିଏ। ସେହି ଗାଁର ଲୋକେ ଭଲ 'ଘଡ଼ି' (ଘଣ୍ଟା) ତିଆରି କରୁଥାନ୍ତି। କ୍ରମେ ସେ ଗାଁର ଅନେକ ଘଡ଼ି-ତିଆରି-କଲାବାଲା ମରିଯାଇ ଗଲେ। ସେମାନଙ୍କ ପିଲାଏ ଆଉ ଘଡ଼ି ତିଆରିରେ ମନ ବଳାଇଲେ ନାହିଁ, ସହରକୁ ଚାଲିଗଲେ।

କିଛିଦିନ ପରେ ସେ ଦେଶର ଯୁବରାଜ ଥରେ ସେଇ ଗାଆଁକୁ ବୁଲି ଯାଇଥାନ୍ତି। ଆଗରୁ ତିଆରି ହୋଇ ରହିଥିବା ସୁନ୍ଦର ସୁନ୍ଦର ଘଡ଼ିସବୁ ଦେଖି ସେ ପଚାରି ଉଚରି କରି ବୁଝିଲେ ଯେ ଆଉ ନୂଆ ଘଡ଼ି ସେଠି କେହି ତିଆରି କରୁ ନାହାନ୍ତି।

ଯୁବରାଜଙ୍କ ମନରେ ଦୁଃଖ ହେଲା। ସେ ଠିକ୍ କଲେ ଯେ ସେଇ ଗାଁର ଘଡ଼ି-ଶିଳ୍ପକୁ ପୁଣି ଜିଆଁଇବାକୁ ହେବ। ସେ ଘୋଷଣା କଲେ ଯେ ଶୀତ ଋତୁ ଶେଷବେଳକୁ ଯେଉଁମାନେ ଭଲ ଘଡ଼ି ତିଆରି କରିଦେବେ ସେମାନଙ୍କୁ ଦୁଇଟି ପୁରସ୍କାର ଦିଆଯିବ।

ଖବରଟା ରଷ୍ଟ୍ର ହୋଇଗଲା। ଯେଉଁ କେତେ ଜଣ ପୁରୁଣା କାରିଗର ବଞ୍ଚିଥିଲେ; ସେମାନେ ପୁରସ୍କାର ପାଇବାକୁ କାମରେ ଲାଗିଗଲେ।

ଯୋସେଫ୍ ପିଲାଟିଏ, ସେ ଗାଁରେ ତା ଜେଜେବାପାଙ୍କ ପାଖରେ ରହୁଥାଏ। ଶୀତଦିନର ଲମ୍ବା ସନ୍ଧ୍ୟାଗୁଡ଼ିକରେ ଯେତେବେଳେ ବରଫ ଜମାଟ ହେଉଥାଏ, ସେ ତା ଜେଜେଙ୍କ ପାଖରେ ବସି ଘଡ଼ି ତିଆରି କାମ ଶିଖୁଥାଏ।

ଦିନେ ପିଲଟି ତା ଜେଜେଙ୍କୁ କହିଲା—"ମୁଁ ଏବ ପୁରସ୍କାର ପାଇବାକୁ ମନ କରୁଛି । ତୁମେ ଯଦି ମୋତେ ସାହାଯ୍ୟ କରନ୍ତ, ନିଶ୍ଚୟ ପୁରସ୍କାର ପାଇବ ।' ତା ଜେଜେ କିନ୍ତୁ ତାକୁ ଖୁବ୍ ଭରସା ଦେଇ ପାରିଲେ ନାହିଁ—'ଆମରି ପଇସା କାହିଁରେ, ଯେଉଁଥିରେ ଆମେ ସୁନ, ରୁପା ଭଳି ରଙ୍ଗ କରି ଘଡ଼ିଟିକୁ ସୁନ୍ଦର କରିପାରିବା । ନଇଲେ ଆମ ଘଡ଼ିଟି ସାଦାସିଧା ହୋଇଯିବ ଯେ ।'

ଯୋସେଫ୍ କହିଲା—'ହେଉ, ସାଦାସିଧା ହେଲେ ବି ଆମ ଘଡ଼ିଟି ମଜବୁତ ହେବ । ମୁଁ ଭାବୁଛି ସେଥିରେ ଗୋଟିଏ ନୂଆ କାମ କରାଯିବ ।'

କହିଦେଲା ସିନା, ନୂଆ କାମ କ'ଣ ହେବ ସେ କଥା ଯୋସେଫ୍ ଭାବିବାକୁ ଲାଗିଲା । ତା ଜେଜେ ତା ପାଇଁ ଅପେକ୍ଷା କଲେ ।

ସେଦିନ ଯୋସେଫ୍ ଗାଆଁ ପାଖ ବଣରେ ବୁଲୁ ବୁଲୁ ଦେଖିଲା ବସନ୍ତ ଋତୁର ଆଗମନରେ ଦମେ ବରଫ ତରଳି ଯାଉଛି । ବୁଲୁ ବୁଲୁ ସେ କୋଇଲିର ଡାକ ଶୁଣିଲା 'କୁଉ' ।

ଯୋସେଫ୍ ମନରେ କଥାଟା ଖେଳିଲା—ଘଣ୍ଟାଟିଏ ବା ଅଧ ଘଣ୍ଟାଏ ପୂରିଗଲେ ଘଡ଼ିରେ ଢଙ୍ଗ ଢଙ୍ଗ ଶବ୍ଦ ହୁଏ, ସମୟ ଜଣାଯାଏ । ଯଦି ସେଇ ଘଣ୍ଟାର ଢଂ ଢଂ ବଦଳରେ କୋଇଲିର ଡାକ ବାହାର କରାଯାଏ, ତା ହେଲେ......?

ଯୋସେଫ୍ ପବନ ବେଗରେ ଦଉଡ଼ିଲା ଘରକୁ, ତା' ଜେଜେଙ୍କୁ କଥାଟା କହିଲା । ଜେଜେ ଅନେକ ସମୟ ଯାଏ କଥାଟା ଭାବିଲେ । ଶେଷରେ କହିଲେ—'ତୁ ଯାହା କହୁଛୁ କରିହେବ । କମିତି କରି ହେବ ତା'ର ଗୋଟାଏ ଖସଡ଼ା କରାଯାଉ ।"

ଜେଜେ ଆଉ ନାତି କାଗଜ, ପେନ୍‌ସିଲ୍, ରୁଲ୍ ପଟା ଆଣି ଖସଡ଼ା ତିଆରି କରି ବସିଲେ । ଘଡ଼ିରେ କେଉଁଠି କୋଇଲିକୁ ରଖାଯିବ, କମିତି ଶବ୍ଦ ସେ କରିବ, କେଉଁ ବାଟରେ ସେ ବାହାରି ଶବ୍ଦ କରି ପୁଣି ଘଡ଼ି ଭିତରକୁ ପଶିଯିବ ? ଏହା ସବୁ ଭାବି ବସିଲେ ।

ତା'ପରେ ସେମାନେ କାମରେ ଲାଗିଗଲେ । ସେମାନେ ଘଡ଼ିଟିଏ ତିଆରି କଲେ । ବାହାରକୁ ସେଇଟି ସାଦାସିଧା ଦେଖାଯାଉଥାଏ । ଯୋସେଫ୍ ଚଉଡ଼ା ଘର ତିଆରି ସୁନ୍ଦର ସୁନ୍ଦର ଘଡ଼ିର ଖବର ପାଉଥାଏ—ଘରି ଜଣଙ୍କ ଘଡ଼ିରେ ନାନା ପ୍ରକାର ଫଳ କାଠରେ ଖୋଦେଇ ହୋଇ ଲଗାହୋଇଛି । ଆଉ ଜଣେ ରୁପାରେ ଘଡ଼ିର କଣ୍ଟା ତିଆରି କରିଛି । ଯୋସେଫର ମନ ସେସବୁ ଘଡ଼ି ଦେଖି ଦବି ଯାଉଥାଏ । ତା' ଜେଜେ କିନ୍ତୁ ତାକୁ କହୁଥାନ୍ତି, 'ଆମ ଘଡ଼ିଟି ନୂଆ ପ୍ରକାରର । ଘରି ମଜବୁତ୍ । ଘଡ଼ିଟିଏ ଯଦି ଠିକ୍ କାମ କରେ ତା'ହେଲେ ପୁରସ୍କାର ପାଇବାରେ ଅସୁବିଧା କ'ଣ ହେବ ?'

ଧନେ ଜେଜେ ଘଡ଼ି କଣ୍ଟାକୁ ଗୋଟାଏ ବାଜିବାକୁ ପାଞ୍ଚ ମିନିଟ୍‌ରେ ରଖି ଦମ୍ ଦେଲେ । ସେଇ ପାଞ୍ଚ ମିନିଟ୍ ଅପେକ୍ଷା କରିବାକୁ ଯାଇ ଯୋସେଫ୍‌ର ମନେ ହେଲା ଯେ ସମୟ ଯେମିତି ମୋଟେ ଆଗଉ ନାହିଁ ।

ଗୋଟାଏ ବାଜିବା ବେଳ ହେଲାରୁ ହଠାତ୍ ଘଡ଼ି ଉପର ଗ୍ଲେଟ ଦୁଆରଟି ଖୋଲିଗଲା । କୋଇଲିଟି ବାହାରି ଆସି ଡାକ ଦେଲା 'କୁଉ୍' । ତା'ପରେ ଭିତରକୁ ଚାଲିଗଲା ଓ ଦୁଆର ବନ୍ଦ ହୋଇଗଲା ।

ଆଉ ଯୋସେଫ୍‌କୁ ପାଏ କିଏ ? 'ହୋଇଗଲା, ହୋଇଗଲା' ବୋଲି ପାଟି କରି, ତାଳି ମାରି ନାଚିଗଲା ଯୋସେଫ୍ । କହିଦେଲା— 'ଏମିତି ଘଡ଼ି କେହି ହେଲେ କରିପାରି ନାହାନ୍ତି । ପୁରସ୍କାର ନିଶ୍ଚୟ ଆମକୁ ମିଳିବ ।'

ଶୀତଦିନ ସରିଲା । ପୁରସ୍କାର ପାଇଁ ଘଡ଼ି ବାଛିବା ଦିନ ଆସିଲା । ସେଇ ଗାଁର ଗୀର୍ଜା ଘରର ଲମ୍ବ ବାରଣ୍ଡାରେ ଘଡ଼ିଗୁଡ଼ିକ ଟାଙ୍ଗି ଦିଆଗଲା । ଯୁବରାଜ ଓ ଯୁବରାଣୀ ଆସି ପହଞ୍ଚିଗଲେ ।

କେତେଗୁଡ଼ିଏ ଘଡ଼ି ବଡ଼ ଆକାରର ଥିଲା । ସେଥିରେ ନାନା ପ୍ରକାର କାରୁକାର୍ଯ୍ୟ କରିଯାଇଥିଲା । କେତେଗୁଡ଼ିଏ ଘଡ଼ିରେ ନାନା-

ପ୍ରକାର ରଙ୍ଗ ଦିଆଯାଇ ସୁନ୍ଦର କରାଯାଇଥିଲା । ଯୁବରାଜ ଆଉ ଯୁବରାଣୀ ଘଣ୍ଟିଗୁଡ଼ିକ ଦେଖି ଦେଖି ଯାଉଥାନ୍ତି । ଯୋସେଫ୍ ଘଣ୍ଟସବୁ ଦେଖି ଟିକିଏ ଡର ଯାଇଥାଏ । କାରଣ ତା' ଘଣ୍ଟି ଆକାରରେ ସାନ । ସେଥିରେ କୌଣସି କୌଣସି କାରିଗରୀ କରାହୋଇ ନଥାଏ । ପୁଣି ତାକୁ ଗୋଟାଏ କଣରେ ଟାଙ୍ଗି ଦିଆହୋଇଥାଏ ।

ଯୋସେଫ୍ ଭାବିଲା—'ଯଦି ଏତିକିବେଳେ ଗୋଟାଏ ଘଣ୍ଟା ହୁଅନ୍ତା, ତା'ହେଲେ ଘଣ୍ଟି ବାଜନ୍ତା ।' କିନ୍ତୁ ସେତେବେଳକୁ ସମସ୍ତ ହୋଇଥାଏ ଦୁଇଟା ବାଜି ଦଶମିନିଟ୍ । ଯୋସେଫ୍ ଭାବିଲା— 'ଯୁବରାଜ କ'ଣ ଘଣ୍ଟା ପଡ଼ିବାଯାଏ ଆଉରି ପଚାଶ ମିନିଟ୍ ରହିବେ ? ଯଦି ନ ରହନ୍ତି, ତା' ହେଲେ ?'

ଶେଷରେ ଅଧୈର୍ଯ୍ୟ ହୋଇ ସେ ଯାଇ ଯୁବରାଜଙ୍କୁ କହିଲା— 'ଆପଣ ଯଦି ମୋତେ ଅନୁମତି ଦିଅନ୍ତେ ମୁଁ ମୋ ଘଣ୍ଟିର କଣ୍ଟାକୁ ଆଗେଇ ଦେଇ ଆପଣଙ୍କୁ ଦେଖେଇ ଦିଅନ୍ତି, ଘଣ୍ଟି କେମିତି ବାଜେ ?'

ଯୁବରାଜ ତାକୁ ଅନେଇ ହସି କହିଲେ—'ତୁମେ ତ ଜଣେ ବାଳକ କାରିଗର । କାହିଁ ତୁମର ଘଣ୍ଟି ?'

ଯୋସେଫ୍ ତା' ଘଣ୍ଟିକୁ ଦେଖେଇଦେଲା । ଯୁବରାଜ ତା' ଘଣ୍ଟିକୁ ଦେଖି ହସିଲେ । କାରଣ ତା' ଘଣ୍ଟି ଛୋଟ, ସାଦାସିଧା ଓ ମାମୁଲି ଧରଣର । ତଥାପି ଯୁବରାଜ କହିଲେ—'ହଉ, ତୁମ ଘଣ୍ଟିର କଣ୍ଟା ଆଗେଇ ଦେଇ ବଜାଅ ।'

ଯୋସେଫ୍ ତରତର ହୋଇ ଯାଇ ଘଣ୍ଟିର କଣ୍ଟା ଯୋଡ଼ିକକୁ ତିନଟା ବାଜିବା ପାଇଁ ସଜେଇ ଦେଲା । ତା'ପରେ ଠିକ୍ ତିନଟା ହେଲାରୁ ହଠାତ୍ ଘଣ୍ଟିର ତଳ ଭାଗରେ ଥିବା ଦୁଆରଟି ଖୋଲିଗଲା, ବାହାରି ଆସିଲା କୋଇଲି, ତିନି ଥର ଶବ୍ଦ କଲା—'କୁଉ', 'କୁଉ' 'କୁଉ' । ତା'ପରେ କୋଇଲି ପୁଣି ଘଣ୍ଟି ଭିତରକୁ ପଶିଗଲାରୁ ଦୁଆର ବନ୍ଦ ହୋଇଗଲା ।

'ଆରେ ବଢ଼ିଆ ତ ।' ଯୁବରାଜ ଖୁସି ହୋଇ କହିଲେ । ଯୁବରାଣୀ ବି ହସିଲେ । ଯୁବରାଜ ଘୋଷଣା କଲେ—'ଏଇ ଘଣ୍ଟି ପ୍ରଥମ

ପୁରସ୍କାର ପାଇଲା । ଏ ଏକ ନୂଆ ପ୍ରକାରର ଘଡ଼ି । ଘଡ଼ି ତିଆରରେ ଏଇଭଳି କୌଶଳ ଆମେ ଖୋଜୁଥିଲୁଁ ।'

ଯୋସେଫ୍ ପ୍ରଥମ ପୁରସ୍କାର ପାଇଲା —ଅନେକଗୁଡ଼ିଏ ସୁନା ମୋହର । ତା' ଛଡ଼ା ଏଇଭଳି ଘଡ଼ି ତିଆର କରିଦେବାକୁ ଅନେକ ଲୋକ ବରାଦ ଦେଲେ । ତା' ଜେଜେ କହିଲେ— 'ଏଥର ଆମେ ଗୋଟିଏ ଶ୍ରେଷ୍ଠ କାରଖାନା କରିବା, ଯେଉଁଠି ଘଡ଼ି ତିଆର ହେବ ? କିଛି କାରିଗର ମଧ୍ୟ ରଖିବା । ନ ହେଲେ ଏତେ ଘଡ଼ି ତିଆର କରିବ କିଏ ?'

ସେଇ ସୁନା ମୋହର ବଳ ସେମାନେ ଗୋଟିଏ ଶ୍ରେଷ୍ଠ କାରଖାନା ଖୋଲିଲେ ଓ ଅନେକ 'କୋଇଲି ଘଡ଼ି' ତିଆରିକରି ସାରା ପୃଥିବୀରେ ବିକିଲେ ।

'କୋଇଲି ଘଡ଼ିଟିଏ ପାଇଲେ କିଏ ବା ଖୁସି ନ ହେବ ?



# ମୋ କାହାଣୀ

## ଅଧ୍ୟାପକ କୁଳମଣି ମହାପାତ୍ର

ମୁଁ ଗୋଟିଏ ବିଲେଇ । ଅବଶ୍ୟ ଟିକିଏ ଓଲେଇ । ଶିକା ଓ ଥାକରେ ଖାଇବା ଜିନିଷ ଥିଲେ ବାସନା ଶୁଙ୍ଘି ମୁଁ ଜାଣିଯାଏ । ମତେ ତ କମ୍ କାଇଦା ଜଣାନାହିଁ ! ଯେତେ ଉଚ୍ଚରେ ଥିଲେ ବି ଝାମ୍ପ ମାରେ । ଗଛଚଢ଼ାରେ ମୁଁ ଧୁରନ୍ଧର । କେଉଁଠି କଣ ସବୁ ଲୁଚାଇ ରଖିବ ରଖ, ମୁଁ ବିଲେଇଟି—ଅବଶ୍ୟ ଟିକିଏ ଓଲେଇ ।

ମୋର ଗୋଟାଏ ବଡ଼ ପ୍ରକୃତି ଅଛି । ଆମିଷ ଟିକିଏ ପାଟିରେ ନ ବାଜିଲେ ମତେ ଅରୁଚି ଧରିଯାଏ । ଶୁଖୁଆ ପୋଡ଼ା, ମାଛଭଜା ନ ହେଲେ, ବେଳକୁ କଙ୍କଡ଼ା ଛେଚ୍ଚ ଟିକିଏ ହେଲେ ମୋର ଚଳିଯାଏ । ତା ବୋଲି କଣ ତୁମେ ଭାବୁଛ ମୋର ଖାଲି ଅସୁରିଆ ପ୍ରକୃତି ? ବୁଝିବାକୁ ଗଲେ ମୋଠାରୁ ବଡ଼ ବୈଷ୍ଣବ କେହି ନାହିଁ । ସେଥିପାଇଁ ପରା ମତେ 'ବିରାଡ଼ି ବୈଷ୍ଣବ' ବୋଲି ଲୋକେ କହନ୍ତି । ଦୁଧ ଘିଅ ସର, ରାବଡ଼ି ସେଥିରୁ ଯେତେ ଦିଅ, ଆଖି ପିଛୁଳାକେ ଚଟ୍ଟ କରିଦେବି । ବାବୁଘର ପିଲାମାନେ ଡାଲିଭାତ ଖାଇଲାବେଳେ ମୁଁ ଦୁଧ ଭାତ ଖାଏ । ଏଇଥିରୁ ଭାବିନିଅ ମୁଁ କେଡେ ଉଚ୍ଚବଂଶର ଜୀବ ।

କିନ୍ତୁ ଅଲକ୍ଷଣୀ ପ୍ରକୃତି ଗୁଡ଼ିକ କୁଆଡ଼ୁ । ଭାଡ଼ିପାଖରେ ଖଡ୍ କରି ହେଲେ ମୁଁ କାନ ଠିଆକରି ଶୁଣେ । ମୂଷାଫୁସା ଦେଖିଲେ ଝାମ୍ପ ମାରେ ! ଯେଉଁଦିନ ମୂଷା ଗୋଟାଏ ଦିଟା ଜଳଖିଆ କରି ଦେଇଥିବି, ସେଦିନ ବଡ଼ ଶାନ୍ତି । ସେଗୁଡ଼ାକୁ ଧରି ଚୁଡ଼ୁମୁଡ଼ୁ କରି ପାମ୍ପଉପର ଶୋଇବାଏ । ଛୋଟା ମୂଷା କଣ, ବୁଢ଼ା ମୂଷା କଣ ସମସ୍ତଙ୍କ ଉପରେ ମୋର ଆଖି ।

ଏ ତ ଗଳ୍ପ ମୋ ଖାଦ୍ୟପେୟ କଥା । ତାପରେ ଶୋଇବା କଥା । ତମେ ତ ଜାଣିଥିବ, ଗଦି ଉପରେ ନ ଶୋଇଲେ ମୋ ଆଖିକି ନିଦ ଆସେନା । ବାବୁମାନେ କି ତାଙ୍କ ପିଲାମାନେ ଶୋଇଗଲା ପରେ ମୁଁ ତାଙ୍କ ଗଦି ଉପରକୁ ଉଠିଯାଇ ଗୃହ-କାତ ମେଲେଇ ପଡ଼ିଯାଏ । ତାପରେ ଦୁକା ଟାଣିଲାପରି ଗୁଡ଼ୁ ଗୁଡ଼୍ ହୁଏ । ଦେହଟା ତ ମୋର ସ୍ପଞ୍ଜ ପରି ନରମ । ଦେହର ବାଳଗୁଡ଼ାକ ମୁଲାୟମ । ବାବୁଆଣି ତାଙ୍କ ପିଲାଙ୍କୁ କୋଳରେ ନ ପୂରାଇ ମତେ ପୂରାନ୍ତି । ବିଲେଇ ଜନ୍ମ ପାଇଛି ବୋଲି ସିନା ଅସୁସ କରୁଛି ।

କିନ୍ତୁ କେତେଗୁଡ଼ାଏ ବଗୁଲିଆ ଟୋକା ମତେ ବଡ଼ ହଇରାଣ କରନ୍ତି । ମୋ କାନକୁ ମୋଡ଼ନ୍ତି ଓ ଲାଙ୍ଗୁଳକୁ ଟାଣନ୍ତି । ମତେ ଏସବୁ ସର୍ବସ କଲାପରି ଲାଗେ । ଗୋଡ଼ରେ ଠେଲିଦେଲେ ବି ମୁଁ କିଛି ମନେ କରେନା । ବଳେବଳେ ଯାଇ ପଡ଼େ । ଦେହରେ ଘର୍ଷି ହୁଏ । ବେଶୀ କଷ୍ଟ ହେଲେ ଆପତ୍ତି କରି କହେ—ମ୍ୟାଉଁ ! ସେତିକିରେ ଖାଉଁଦାଣୀ ଖୁସ୍ ।

ହେଲେ, ମୁଁ ଟିକିଏ ଛିଙ୍କ ଦେଲେ ଲୋକେ କାହିଁକି ବିରକ୍ତ ହୁଅନ୍ତି କେଜାଣି । ସମସ୍ତେ ଛିଙ୍କୁଛନ୍ତି, କିଛି ନାହିଁ—ମୁଁ ଛିଙ୍କିଲେ କୁଆଡ଼େ ଅନୁକୂଳ ବିଗିଡ଼ିଯାଏ । ମତେ ବେଶୀ ଡରନ୍ତି ପଞ୍ଜାବି ମଟର ଡ୍ରାଇଭରମାନେ । ସେମାନଙ୍କ ଗାଡ଼ି ଆଗରେ ମୁଁ ଯଦି କେବେ ଲମ୍ଫିଯାଏ, ତେବେ ସେମାନେ ମତେ ଗାଳିଭ କରି ତିନ ପାହୁଣ୍ଡ ପଛକୁ ଫେରିଯାଆନ୍ତି । ମାଇପେ ଡରି ଚିତ୍କାର କହନ୍ତି— ବାଘ ନ ଦେଖିଲେ ବିଲେଇ ଦେଖ ।

ତମେ ସମସ୍ତେ ଜାଣିଥିବ, ବାଘ ମୋ ଭଉଣୀ—ହେଲେ ସେ ଜଙ୍ଗଲି ଆଉ ମୁଁ 'ଟାଉନବାଲା' । ମୁଁ ଗଦିରେ ଶୋଉଛି । ସେ ବୁଦା-ବୁଦି ପଛରେ ମାଟିରେ ଶୁଏ । ବନୁଆ ହେଲେ କଣ ହେବ, ତାର ଚଉଦନ ବନବାସ । ମାତ୍ର ମୁଁ ବାବୁଙ୍କାମକୁ ଆଦରି ନେଇଥିବାରୁ ପୂରା ସହରି-ଟାଉନବାଲା ।

— ଦେଖ, ତୁମକୁ ସବୁକଥା କହିଦେଲି । ଏଥର ମୋ ଲାଞ୍ଜକୁ ଟାଣିବ ନାହିଁ । ମୋ ନଖ ଦେଖିଛଟି । ତମ ପେଟକୁ ବିମ୍ପୁଡ଼ି

ପଳାଇବ । ସେଦିନ ଗୋଟାଏ କୁକୁର ମୁହଁକୁ କମିତ ଆମ୍ବ ଡ଼ି ଦେଇଛୁ ଜାଣିଛନ୍ତି ? ମୁଁ ଘର ବଗି । ବିଚରା କୁକୁରଟା ଏଡ଼େ କୋଢା, ହେଲେ କଣ ହେବ ମୋ ଗମ୍ଭୁଡ଼ା ଖାଇ ଭଉଁ ଭଉଁ ହୋଇ ଦୌଡ଼ଲ ଯେ, ଦୌଡ଼ଲ·· ।

ଆଚ୍ଛା ମୋ! ନଣ ହଳକ କେମିତି ମାନୁଛୁ କହିଲ ? ଘିଅ, ଦୁଧ, ମାଛ, ଶୁଖୁଆ ଖାଉଛୁ, ଫୁର୍ତିରେ ରହୁଛୁ । ଏପରି ସ୍ଥଳେ ନଣ ହଳକ ନ ରଖିଲେ ଲୋକଙ୍କର ମୋ ପ୍ରତି ଭକ୍ତି ଆସିବଟି ? ମୁଁ କଣ ଏକୁଟିଆ ? ଆମ ଜାତିରେ ସମସ୍ତେ ସଉକନିଆ । ସଉକନିଆ ଲୋକଗୁଡ଼ାକ ଟିକଏ ମେଳାପି । ସେଥିଲାଗି ମୋର ସବୁଠାରେ ବନ୍ଧୁତା । ମୋର ଏ କାହାଣୀ ବା ଆତ୍ମକାହାଣୀକୁ ମୋ ବନ୍ଧୁମାନେ ସେମାନଙ୍କ ଡ଼ାଇରୀରେ ଲେଖି ରଖିବାକୁ ଯେପରି ନଭୁଲନ୍ତି ।



# ସ୍ମୃତି

ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ

ବାପ ପୁଅ ଦୁଇଜଣ ଯାକ ଜାଲ ପକାଇ ପକାଇ ହାଲିଆ ହୋଇଗଲେଣି । କାହିଁ, ଆଜି ଗୋଟିଏ ବି ମାଛ ତାଙ୍କ ଭାଗ୍ୟରେ ଯୁଟୁନି । ମାଛ ମାରି ସେମାନେ ପେଟ ପୋଷନ୍ତି । ଯେଉଁଦିନ ମାଛ ମିଳେନି ସେଦିନ ସେମାନଙ୍କର ବଡ଼ କଷ୍ଟ । ବାପଟି ଭଗବାନଙ୍କୁ ଡ଼ାକି ପାଣି ଭିତରକୁ ପୁଣି ଜାଲ ଫିଙ୍ଗିଲା । ପୁଅ ଡ଼ଙ୍ଗାର ମଙ୍ଗ ଉପରେ ବସିଛି । ବାପ ହଠାତ୍ ପାଟି କରି ଉଠିଲା 'ବଡ଼ ଓଜନିଆ ଲାଗୁଛିରେ । ଗୋଟିଏ ବେଶ୍ ବଡ଼ ମାଛ ହେବ ପରା! ଧରନ୍ତୁ ଟିକିଏ! ବାପ ପୁଅ ଦୁହେଁ ଧରାଧରି କରି ଡ଼ଙ୍ଗା ଉପରକୁ ଜାଲକୁ ଉଠାଇ ଆଣିଲେ । ବାପରେ ବାପ୍, ଏଡ଼େ ବଡ଼ ମାଛ ! ବାପ ପୁଅ ମାଛଟିକୁ ନିରେଖି ଦେଖିଲେ । ମାଛ ମାରି ମାରି ବାପର ବାଳ ପାଚିଲାଣି । ଏମିତିକା ଗୋଟିଏ ମାଛ ସେ ଆଗରୁ କେବେ ଦେଖିନି । ମାଛର ଦେହ ସାରା ବଡ଼ ବଡ଼ ଚକଚକିଆ ନାଲି କାତି । ଅତି ଆଶ୍ଚର୍ଯ୍ୟର କଥା ମାଛର ଡ଼େଣା-ଗୁଡ଼ିକ ବି ସାଧାରଣ ମାଛର ଡେଣା ଭଳିଆ ନୁହେଁ । ଅନ୍ୟ ମାଛ-ମାନଙ୍କର ଡ଼େଣାଗୁଡ଼ିକ ତ ଦେହ ପାଖରେ ଲାଗିକରି ରହିଥାନ୍ତି । ଏ ମାଛର ଡ଼େଣାଗୁଡ଼ିକ କ'ଣ ମାଛ ଦେହରୁ ବାହୁଙ୍ଗଳି ଝୁଲି ପଡ଼ିଥିବା କାନ୍ତିପୂର୍ଣ୍ଣ ଏକ ଅଂଶର ଛନ ଆଡ଼କୁ ଲାଗି ରହିଛନ୍ତି । ତାଙ୍କ ପଡ଼ାରେ ବୁଢ଼ାବୁଢ଼ୀମାନେ କହନ୍ତି ସମୁଦ୍ରରେ ଜଳପରୀ ସବୁ ମଝିରେ ମଝିରେ ପହଁରିବାର ସେମାନେ କୁଆଡ଼େ ଦେଖିଛନ୍ତି । ମଣିଷକୁ ଦେଖିଲାମାତ୍ରେ ସେମାନେ ପାଣିରେ ବୁଡ଼ିଯାନ୍ତି । ଏ ମାଛଟା କ'ଣ ସତରେ ଗୋଟିଏ ଜଳପରୀ ? ମାଛକୁ ଜାଲ ଭିତରେ ଗୁଡ଼େଇ ପୁଡ଼େଇ ଡଙ୍ଗା ବାହିବାହି ସେମାନେ କୂଳକୁ ଆସିଲେ । ଅଦ୍ଭୁତ ଏ ମାଛକୁ ଦେଖିବାକୁ ପ୍ରବଳ ଭିଡ଼ । ମାଛଟିର ଲମ୍ବ ୧୫ ମିଟର ଓଜନ

୫୮କେ.ଜି. । ଏଭଳି ମାଛଟିଏ ଦେଖିଥିବାର କେହି ବି ମନେପକାଇ ପାରିଲେ ନାହିଁ । ଏମିତିକା ଏକ ମାଛ ଧରାପଡ଼ିଥିବାର ଖବର ବିଜୁଳି ବେଗରେ ସାରାଅଞ୍ଚଳେ ବ୍ୟାପିଗଲା । ଏ ହେଲା ୧୯୩୮ ମସିହା ଡ଼ିସେମ୍ବର ମାସର କଥା ।

ସେତେବେଳେ ରୋଡ୍‌ସ ବିଶ୍ୱବିଦ୍ୟାଳୟର ପ୍ରାଣୀବିଜ୍ଞାନର ମୁଖ୍ୟ ଅଧ୍ୟାପକ ଥିଲେ ଜେ: ବି: ଏଲ ସ୍ମିଥ୍ । ସେ ମାଛଟିକୁ ଦେଖିବାକୁ କୌତୂହଳ ହୋଇଉଠିଲେ । ସନ୍ଧାନ ନେଇ ସେ କେଜିଂ ଘରେ ପହଞ୍ଚିଲାବେଳକୁ ମାଛଟି ପୂରାପୂରି ସଡ଼ିଗଲାଣି । ତଥାପି ବି ବୈଜ୍ଞାନିକ ସ୍ମିଥ୍‌ଙ୍କୁ ସତେ ଯେପରି କୋହିନୁର ମିଳିଗଲା । ମାଛଟି ଉପରେ ପରୀକ୍ଷା ନିରୀକ୍ଷା କରାଇ ସେ ଜଗତକୁ ଏକ ଅତି ମୂଲ୍ୟବାନ ସମ୍ବାଦ ଦେଲେ । ସେ ଜଣାଇଲେ 'ହେ ପୃଥିବୀବାସୀ ମନୁଷ୍ୟଗଣ ଏ ମାଛଟିକୁ ସାମାନ୍ୟ ବୋଲି ଭାବନାହିଁ । ଏତ ତୁମର ପୂର୍ବ-ପୁରୁଷ ।''

ଡ଼ାର୍‌ଉଇନ୍‌ଙ୍କ ମତରେ ଜୀବସୃଷ୍ଟିର ସର୍ବପ୍ରଥମ ପ୍ରାଣୀ ହେଉଛି ଏକକୋଷୀ ଅମିବା । ବିବର୍ତ୍ତନର ପ୍ରଭାବରେ ଏକକୋଷୀ ଆମିବା ବିଭିନ୍ନ ପ୍ରକାରର ବହୁକୋଷୀ ପ୍ରାଣୀରେ ପରିବର୍ତ୍ତିତ ହୋଇ ଶେଷରେ ସୃଷ୍ଟି ହୋଇଛି ମଣିଷ । ତେଣୁ ଏପରି ଏକ ସମୟ ଥିବ ଯେତେବେଳେ ପୃଥିବୀରେ ଆମିବାଠାରୁ ଆରମ୍ଭ କରି ମାଛପର୍ଯ୍ୟନ୍ତ ଜୀବ କେବଳ ପାଣିରେ ରହୁଥିବେ । ତାପରେ ଜଳଚର ମାଛମାନଙ୍କ ମଧ୍ୟରୁ କେତେକ ବେଙ୍ଗ ଓ କୁମ୍ଭୀରଭଳି ଉଭୟଚର ପ୍ରାଣୀରେ ପରିଣତ ହୋଇଥିବେ । ଏହିଭଳି ପ୍ରକ୍ରିୟାମାନ ଘଟି, ପରେ ମନୁଷ୍ୟର ଆବିର୍ଭାବ ହୋଇଛି । ମାଛମାନଙ୍କର ଡ଼େଣା ସେମାନଙ୍କର ଅବୟବଭଳି କାର୍ଯ୍ୟ କରିଥାଏ, ସେହିପରି ବେଙ୍ଗ ଓ କୁମ୍ଭୀରମାନଙ୍କର ମଧ୍ୟ ଆଗ ଓ ପଛରେ ଗୋଡ଼ମାନ ରହିଛି । କିନ୍ତୁ ମାଛମାନଙ୍କର ଡ଼େଣା ସେମାନଙ୍କ ଦେହରୁ ସିଧାସଳଖ ବାହାରିଥିବା ସ୍ଥଳେ ବେଙ୍ଗ, କୁମ୍ଭୀର ଆଦି ପ୍ରାଣୀମାନଙ୍କର ଗୋଡ଼ ଶରୀର ସହ ସିଧାସଳଖ ଯୋଡ଼ ନ ହୋଇ ଶରୀର ସହ ସନ୍ଧି ବା ଗଣ୍ଠି ସୃଷ୍ଟି କରନ୍ତି ।

ଏଇଠି ବୈଜ୍ଞାନିକମାନଙ୍କ ପାଇଁ ଏକ ସମସ୍ୟା ଆସି ଦେଖା-ଦେଲା । ମାଛମାନଙ୍କର ଦେହ ସହ ଲାଗିକରି ରହିଥିବା ଡେଣାମାନ କ'ଣ ହଠାତ୍ ଲମ୍ବିଯାଇ ବେଙ୍ଗ, କୁମ୍ଭୀର ଆଦିଙ୍କର ଅଙ୍ଗରେ ପରିଣତ ହୋଇଗଲା ? ଏହି ପ୍ରଶ୍ନଟି ସେମାନଙ୍କ ମନରେ ଗୁଡ଼ୁଗୁଡ଼େଇ ହେଲେହେଁ ପ୍ରମାଣ ନ ଥାଇ କୌଣସି ସମାଧାନକୁ ମନୁଷ୍ୟ କ'ଣ ସହଜରେ ମାନିନେବ ?

ତେଣୁ ଏକପ୍ରକାର ପ୍ରାଣୀ ନିଶ୍ଚୟ ବେଙ୍ଗ ଓ କୁମ୍ଭୀରର ସୃଷ୍ଟି ଆଗରୁ ଜନ୍ମ ନେଇଥିବ । ସେ ହୋଇଥିବ ମାଛମାନଙ୍କର ବଂଶଧର ଓ ଉଭୟଚର ପ୍ରାଣୀମାନଙ୍କର ପୂର୍ବପୁରୁଷ । ବୈଜ୍ଞାନିକମାନଙ୍କର ବିଶ୍ୱାସ ଯେ, ପ୍ରାୟ ୪୦ କୋଟି ବର୍ଷ ପୂର୍ବେ ପୃଥିବୀରେ ଏପରି ଏକ ପ୍ରାଣୀର ଆବିର୍ଭାବ ହୋଇଥିଲା ।

୧୯୩୮ ମସିହା ଡିସେମ୍ବର ମାସ ପୂର୍ବରୁ ସେମାନଙ୍କର ଧାରଣା ଥିଲା ଯେ, ଏହି ଧରଣର ପ୍ରାଣୀ ପ୍ରାୟ ୭ କୋଟି ବର୍ଷ ପୂର୍ବରୁ ପୃଥିବୀରୁ ଲୋପପାଇ ଯାଇଛନ୍ତି । କିନ୍ତୁ ପ୍ରଫେସର ସ୍ମିଥ୍ ଦର୍ଶାଇଲେ ଯେ ସେ ଦିନର ସେ ଅଦ୍ଭୁତ ମାଛଟି ୭ କୋଟି ବର୍ଷ ପୂର୍ବେ ଲୋପ ପାଇଯାଇ-ଥିବା ସିଲାକାନ୍ଥ ନାମକ ଏକ ମାଛଗୋଷ୍ଠୀର ଅମ୍ବଜ । ଲଣ୍ଡନ ସଂଗ୍ରହାଳୟର କୃତି ତତ୍ତ୍ୱାବଧାରିକା କୁମାରୀ ଲାଟିମରଙ୍କର ଅବଦାନକୁ ସ୍ମରଣ କରି ଓ ଚ୍ଲୁମ୍ନାନଦୀର ମୁହାଣରୁ ଧରାପଡ଼ିଥିବା ହେତୁ ପ୍ରଫେସର ସ୍ମିଥ ତା'ର ନାମରଖିଲେ ଲାଟିମେରିଆ ଚ୍ଲୁମ୍ନେଠ୍ ।

କେତୋଟି ଥିବା ସେଭଳି କିସମର ମାଛଥିବେ । ତେଣୁ ତାଙ୍କ ଭିତରୁ ଗୋଟିଏ ଧରାପଡ଼ିଯିବାରୁ ଲାଟିମେରିଆମାନେ ଡରିଗଲେ ବୋଧହୁଏ । ସେମାନେ ଲୁଚିଗଲେ; ଲୁଚିଲେ ଯେ ଦୀର୍ଘ ୧୪ବର୍ଷ ପର୍ଯ୍ୟନ୍ତ ଆଉ ସେମାନଙ୍କ ଦେଖା ମିଳିଲାନାହିଁ । ୧୪ ବର୍ଷ ପରେ ୧୯୫୨ ମସିହାରେ ପୁଣି ଏଥର ଗୋଟିଏ ମାଛ ଧରାପଡ଼ିଲା । ସେ ଧରାପଡ଼ିଲା କମ୍‌ରୋସ୍ ଦ୍ୱୀପପୁଞ୍ଜ ନିକଟ ସମୁଦ୍ରରୁ । କମ୍‌ରୋସ ଦ୍ୱୀପପୁଞ୍ଜ ଆଫ୍ରିକାର ପୂର୍ବ ଉପକୂଳ ଓ ମାଲାଗାସି ମଧ୍ୟରେ ଅବସ୍ଥିତ । ଏଥର ବି ପୁଣି ସେହି ଅବସ୍ଥା । ମାଛଟିକୁ ସମ୍ପୂର୍ଣ୍ଣ ଅକ୍ଷତ ରଖିବା ସମ୍ଭବପର ହୋଇପାରିଲା ନାହିଁ । ଯାହାହେଉ ବୈଜ୍ଞାନିକମାନଙ୍କର ଦୃଷ୍ଟି କମ୍‌ରୋସ୍ ଦ୍ୱୀପପୁଞ୍ଜକୁ

ଆକର୍ଷିତ ହେଲେ ଓ ସିଲକାନ୍ଥମାନଙ୍କୁ ଧରି ସଂରକ୍ଷଣ କରିବାପାଇଁ ବାଧ୍ୟବାଧକ ବ୍ୟବସ୍ଥା ଆରମ୍ଭ ହେଲା । ଏହି ପ୍ରଚେଷ୍ଟା ବେଶ୍ ଫଳବତୀ ହେଲା ମଧ୍ୟ । ଯାହାଫଳରେ ୧୯୭୫ ଶେଷ ସୁଦ୍ଧା ୦ ପାଖାପାଖି ଏ ଧରଣର ମାଛ ଧରାପଡ଼ି ପ୍ରାଣୀବିଜ୍ଞାନୀମାନଙ୍କର ଗବେଷଣାର ବସ୍ତୁ ହୋଇପାରିଛନ୍ତି । ଖାଲି ସେତିକି ନୁହେଁ, ଲାଟିମେରିଆର ମୂର୍ତ୍ତିରେ କମରୋସ୍ ର କର୍ତ୍ତୃପକ୍ଷ ଏକ ମୁଦ୍ରା ଡାକଟିକେଟ ମଧ୍ୟ ପ୍ରକାଶ କରିଛନ୍ତି ।

ଲାଟିମେରିଆ ବିଷୟରେ ପୁଙ୍ଖାନୁପୁଙ୍ଖ ଗବେଷଣା ହୋଇ ଯେଉଁ ତଥ୍ୟ ମିଳିଲା, ସେଥିରୁ ଜଣାପଡ଼େ ଯେ ସେମାନେ ବଡ଼ ଅଳସୁଆ । ଭଲ ପହଁରିପାରନ୍ତି ନାହିଁ । ସମୁଦ୍ର ଉପରିଭାଗରୁ ପ୍ରାୟ ୧୫୦ରୁ ୩୭୦ ମିଟର ତଳେ ପଥର ଖୋଲରେ ସେମାନେ ଚୁପ୍ ହୋଇ ଅପେକ୍ଷା କରିଥାନ୍ତି । ଅନ୍ୟାନ୍ୟ ମାଛ ଇତ୍ୟାଦି ପାଖକୁ ଆସିଲେ ଟପ୍ କରି ଗିଳି-ଦିଅନ୍ତି । ପୂରା ବଡ଼ ଲାଟିମେରିଆର ଲମ୍ବ ପ୍ରାୟ ୧.୧୦ରୁ ୧.୭୫ ମିଟର ଓ ଓଜନ ପ୍ରାୟ ୩୨ରୁ ୮୦ କେ.ଜି. । ଧରିବାକୁ ଗଲେ ଗୋଟିଏ ପୂର୍ଣ୍ଣବୟସ୍କ ଲାଟିମେରିଆର ଲମ୍ବ ଓ ଓଜନ ଗୋଟିଏ ସାଧାରଣ ମନୁଷ୍ୟର ଲମ୍ବ ଓ ଓଜନ ସହ ସମାନ । ସେମାନଙ୍କ ଆଖି ଦୁଇଟି ଅନ୍ଧାରରେ ଜକଜକ କରୁଥାଏ । ଧରାପଡ଼ିଲା ପରେ ବାହାରର ତାପ ସହ୍ୟ କରିନପାରି ସେମାନେ ମରିଯାଆନ୍ତି ଓ ତା'ପରେ ପଚନ କ୍ରିୟାର ପ୍ରଭାବରୁ ଖୁବ୍ ଶୀଘ୍ର ହିଁ ନଷ୍ଟ ହୋଇଯାଆନ୍ତି ।

ବଡ଼ ମଜାର କଥା ଏଡ୍ୱିନ୍. ଏସ୍. ଗୁଡରିଚ୍ ନାମକ ଜଣେ ପ୍ରାଣୀବିଜ୍ଞାନୀ ତାଙ୍କ ନିଜ କଳ୍ପନାରୁ ସିଲକାନ୍ଥମାନଙ୍କର ହୃତ୍‌ପିଣ୍ଡର ଗଠନ କିପରି ହୋଇପାରିବ ତା'ର ଏକ ଚିତ୍ର ଅଙ୍କନ କରିଥିଲେ । ସେତେବେଳକୁ ସେମାନେ ବିଶ୍ୱାସ କରୁଥିଲେ ଯେ ସିଲକାନ୍ଥମାନଙ୍କର ବଂଶ ୭ କୋଟି ବର୍ଷ ହେଲା ଲୋପ ପାଇଯାଇଛି । କିନ୍ତୁ, ତାଙ୍କ ଚିତ୍ରାଙ୍କନର ୩୦ ବର୍ଷ ପରେ ଯେତେବେଳେ ଲାଟିମେରିଆର ଶରୀର ବ୍ୟବଚ୍ଛେଦ କରାଯାଇ ତା'ର ହୃତପିଣ୍ଡର ପରୀକ୍ଷା କରାଗଲା, ଦେଖାଗଲା ଗୁଡ଼ରିଚ୍‌ଙ୍କର ଚିତ୍ରାଙ୍କ ସହ ଲାଟିମେରିଆର ପ୍ରକୃତ ହୃତପିଣ୍ଡର ଗଠନ ପୂରା ମିଳିଯାଉଛି ।

ଲଟିମେରିଆ କପରି ବଂଶବୃଦ୍ଧି କରେ, ତା' ଉପରେ ମଧ୍ୟ ପରୀକ୍ଷା ଚାଲିଛି । ୧୯୭୨ ମସିହାରେ ଏକ ଲଟିମେରିଆର ପେଟରୁ ୮., ୫ରୁ ୯ ସେ. ମି. ବ୍ୟାସବିଶିଷ୍ଟ ଅଣ୍ଡାମାନ ଆବିଷ୍କୃତ ହୋଇଥିଲା । ଗୋଟିଏ ଗୋଟିଏ ଅଣ୍ଡା ବତକ ଅଣ୍ଡାଠାରୁ ବି ବଡ଼ ହେବ । ୧୯୭୫ ମସିହାରେ ଆଉ ଗୋଟିଏ ଲଟିମେରିଆର ପେଟ ଚିରାଯିବାବେଳକୁ ଦେଖାଗଲା, ତା ପେଟରେ ପାଖାପାଖି ରହିଛନ୍ତି ପାଞ୍ଚଟି ଜୀଅନ୍ତା ଛୁଆ । ବେଶ୍ ବଡ଼ବଡ଼ ଆଖି, ଦେହସାରା କାତି । ବଡ଼ମାନଙ୍କ ଦେହରେ ଯେମିତି ଧଳାରେ ଡେଣାସବୁ ଥାଏ, ସେମିତି ଡେଣା ବି ରହିଛି । ଏହିସବୁ ତଥ୍ୟକୁ ବିଚାରକୁ ନେଇ ପ୍ରାଣୀବିଜ୍ଞାନୀମାନେ ମତ ଦିଅନ୍ତି ଯେ, ଲଟିମେରିଆ ପ୍ରଥମେ ଅଣ୍ଡା ଦିଏ, ପେଟ ଭିତରେ ଅଣ୍ଡା ଫୁଟି ଛୁଆ ବାହାରନ୍ତି । କିନ୍ତୁ ସେ ଛୁଆମାନେ ମା' ପେଟ ଭିତରେ କିଛିକାଳ ଲାଳିତପାଳିତ ହେଲାପରେ ଜନ୍ମ ହୋଇ ବାହାରର ଦୁନିଆକୁ ଆସନ୍ତି । ଲଟିମେରିଆର ଗର୍ଭକାଳ ପ୍ରାୟ ଏକ ବର୍ଷ, ମଣିଷଛୁଆର ତ ମାତ୍ର ୨୮୦ ଦିନ ।

କଲିକତାରେ ଅବସ୍ଥିତ ଭାରତୀୟ ପରିସଂଖ୍ୟାନ ଅନୁଷ୍ଠାନର ଭୂତତ୍ତ୍ୱ ବିଭାଗ ସଂଗ୍ରହାଳୟରେ ଏକ ସିଲାକାନ୍ଥର ଦେହାଂଶ ସଂଗୃହୀତ ହୋଇ ରହିଛି । ୧୯୭୮ ମସିହାରେ ଏହା ଭାରତରେ ପ୍ରଥମେ ଧରା-ପଡ଼ିଥିଲା । ବେଶ ହୃଷ୍ଟପୁଷ୍ଟ ଥିଲା ସେ ମାଛଟି । ଭାରତକୁ ଇଂରାଜୀରେ ଆମେ ଇଣ୍ଡିଆ ବୋଲି କହୁ, ହୃଷ୍ଟପୁଷ୍ଟର ଇଂରାଜୀ ହେଉଛି ରୋବଷ୍ଟ୍ । ତେଣୁ ଯେଉଁଦିନ ସେହି ସିଲାକାନ୍ଥଟିର ନାମକରଣ କରାଗଲା, ତା' ନାମ ରଖାଗଲା ଇଣ୍ଡୋସିଲାକାନ୍ଥ ରୋବଷ୍ଟସ୍ । ବଡ଼ ଦୁଃଖର କଥା ଆମ ଭାରତର ଅନ୍ୟ କୌଣସି ସଂଗ୍ରହାଳୟ ଲଟିମେରିଆର ଅଧିକାରୀ ହେବାକୁ ଏ ପର୍ଯ୍ୟନ୍ତ ସକ୍ଷମ ହୋଇପାରିନାହାନ୍ତି । ଚନ୍ଦ୍ରପୃଷ୍ଠର ମାଟି ଆଜି ଆଉ ଦୁର୍ଲଭ ହୋଇନାହିଁ କିନ୍ତୁ ଆମର ଏହି ପୂର୍ବପୁରୁଷଙ୍କର ଅସ୍ଥି ଟିକିଏ ପାଇବା ବି ଏପର୍ଯ୍ୟନ୍ତ ଆମ ସମସ୍ତଙ୍କ ପକ୍ଷେ ସମ୍ଭବ ହୋଇପାରୁନାହିଁ ।



# ମୁଁ କ୍ୟାମେରା କହୁଛି

## ଅଧ୍ୟାପକ ସୂର୍ଯ୍ୟମଣି ବେହେରା

ଫଟୋ ଉଠାଇବା ସମ୍ପର୍କରେ ଯେଉଁ 'ବିଜ୍ଞାନ' ତାହା ଫଟୋଗ୍ରାଫି ବୋଲି ଜଣା । ଏଇ ଶବ୍ଦଟି ଗ୍ରୀକ୍ ଭାଷାରୁ ଆସିଛି ।

ଫଟୋଜ୍+ଗ୍ରାଫି=ଫଟୋଗ୍ରାଫ । ଫଟୋଜ୍ ଶବ୍ଦର ଅର୍ଥ ହେଲା 'ଲାଇଟ୍' ବା 'ଆଲୋକ' । ଆଉ ଗ୍ରାଫିର ଅର୍ଥ ହେଲା—'ମୁଁ ଲେଖେ' ଅର୍ଥାତ୍ ଫଟୋଗ୍ରାଫିର ପୂରା ଅର୍ଥ ଚିତ୍ର ଅଙ୍କନ—ଆଲୋକ ସାହାଯ୍ୟରେ ମୋର ଚିତ୍ର ଆଙ୍କେ ।

ଆଉ ଟିକିଏ ବୈଜ୍ଞାନିକ ଦୃଷ୍ଟିକୋଣରୁ ଦେଖିଲେ—ଫଟୋଗ୍ରାଫି ଏକ ପ୍ରକାରର କଳା ବା ଆର୍ଟ ଯାହା ଯୋଗେ ଯେକୌଣସି ବସ୍ତୁର ଛବି ଆଲୋକ ସାହାଯ୍ୟରେ ଉଠାଯାଇପାରୁଛି ।

ଫଟୋଉଠା ପାଇଁ ଏକ ରସାୟନିକ ପ୍ରଲେପଦିଆ କାଗଜ ଦରକାର ହୁଏ । ଏହାକୁ 'ଫଟୋ ଫିଲ୍ମ' କୁହାଯାଏ ।

ଫଟୋ ଉଠାଇବା ପାଇଁ ମୁଁ ନ ହେଲେ ନ ଚଳେ ଅର୍ଥାତ୍ ମୁଁ କ୍ୟାମେରା—ମୁଁ ନଥିଲେ ଫଟୋ ଉଠାଇବା ସମ୍ଭବ ନୁହେଁ ।

ମୋ ଭିତରେ କ'ଣ କ'ଣ ରହିଛି ଜାଣ କି ?

ମୁଁ ଏକ ଯନ୍ତ୍ର, ମୋତେ ଗୋଟିଏ ଅନ୍ଧାର ବାକ୍ସ କହିପାର । ମୋର ଗୋଟିଏ କଡରେ 'ଲେନ୍ସ' ଥାଏ । ଓଡ଼ିଆରେ ଲେନ୍ସକୁ 'ଯବକାଚ' କୁହାଯାଏ । ଏଇ ଲେନ୍ସଟି ଠିକ୍ ମଣ୍ଡା-ପିଠା ଭଳି ଦେଖିବାକୁ । ଅର୍ଥାତ୍ ଲେନ୍ସଟିର ଦୁଇ ପାଖ ଫୁଲା ରହିଥାଏ । ଏଇ

ଧରଣର ଲେନ୍ସ 'ଉତ୍ତଳ ଯବକାଚ' । ମଜାର କଥା ଯେ ଯଦି କାହାର ଛାଇ ଏଇଭଳି ଲେନ୍ସ ଉପରେ ପଡ଼େ, ତେବେ ତାର ସେଇ ଛବିଟି ଓଲଟା ଭାବରେ ଦେଖାଯାଏ ।—ହଁ, ଲେନ୍ସଟି ତ ମୋର ଗୋଟିଏ ପାଖରେ ଥାଏ । ଠିକ୍ ତାର ବିପରୀତ ପାଖରେ ଛବି ଲାଗି ରହୁଥିବା କାଗଜ ବା ଯାହାକୁ ଫିଲ୍ମ କୁହାଯାଏ, ତାକୁ ଧରି ରଖିବାର ଆଉ ଏକ ଯନ୍ତ୍ରଥାଏ । ତେଣୁ ଫଟୋ ଉଠାଇବା ସମୟରେ ଯାହାର ଫଟୋ ଉଠାଯାଏ ତା ଆଗରେ ମୋତେ ସଜାଇ ଧରାଯାଏ । ଏହା ଫଳରେ ଯାହାର ଫଟୋ ଉଠାଯାଏ ସେଇ ବସ୍ତୁଟିର ଛାଇ ମୋ'ର ଲେନ୍ସ ଉପରେ ପଡ଼େ । ସଙ୍ଗେ ସଙ୍ଗେ ସେଇ ଛାଇଟି ଓଲଟା ଭାବରେ ଲେନ୍ସ ପଛରେ ଥିବା ଫିଲ୍ମ ଉପରେ ପଡ଼ିଥାଏ । ଆଉ ମୋ ଦେହରେ ଥିବା ସୁଇଚ୍ଟି ଟିପିଦେବା ମାତ୍ରକେ ସେଇ ବସ୍ତୁର ଛାଇଟି ଫିଲ୍ମରେ ଲାଗି ରହିଯାଏ ।

ଫଟୋ ଉଠାଇବା ସମ୍ପର୍କରେ ମୁଁ ଯାହା କହିଲି, ତାହା ଶୁଣି ଭାବୁଥିବ, ଫଟୋ ଉଠାଇବା କେତେ ସହଜ ? ସେ କଥା ଠିକ୍ ଯେ ହେଲେ ପ୍ରଥମେ ଗୋଟିଏ ଫିଲ୍ମରେ ଫଟୋ ଉଠାଇ ସାରିବା ପରେ, ସେଇ ଫିଲ୍ମରୁ ପୁଣି ଆଉ ଗୋଟିଏ ଧଳା କାଗଜ ଉପରେ ତାର ଫଟୋ (ଛବି) ଉଠାଯାଏ । ଫଟୋ ଉଠାଇବା ପାଇଁ ଯେଉଁ ଫିଲ୍ମସବୁ ବଜାରରୁ କିଣାଯାଏ ତାହା ଦେଖିବାକୁ କଳା । କାରଣ ସେଇ ଫିଲ୍ମ ଉପରେ ଗୋଟିଏ ରାସାୟନିକ ପଦାର୍ଥ ଦିଆହୋଇଥାଏ । ତାହା ହେଉଛି ସିଲ୍ଭର ବ୍ରୋମାଇଡ୍ ।

ଆଲୋକ ପଡ଼ିବା ମାତ୍ରକେ ତାହାର ଗୁଣ ନଷ୍ଟ ହୋଇଯାଏ । ଏଣୁ ତାହାକୁ ମୋ ଭିତରେ ଅନ୍ଧାର ଘରେ ହିଁ ରଖାଯାଇଥାଏ । ଯେତେବେଳେ ତାକୁ ମୋ ଭିତରେ ରଖାଯାଇ କାହାର ଫଟୋ ନିଆଯାଏ, ସେତେବେଳେ ଯାହାର ଫଟୋ ନିଆହୁଏ ସେହି ବସ୍ତୁଟିର ଛବିଟି ଲେନ୍ସ ଉପରେ ଓଲଟାଭାବରେ ପଡ଼ି ତାର ଛାଇ ସେଇ ଫିଲ୍ମ ଉପରେ ପଡ଼େ । ସୁଇଚ୍ ଟିପିଦେବା ମାତ୍ରକେ ଫିଲ୍ମର ସେଇ ଛାଇଆକାର ଅଂଶ ଉପରେ ତାହା ଲାଗି ରହେ ।

ଏହିପରି ଭାବରେ ଫିଲ୍ମ ଉପରେ ଫଟୋ ଉଠାଇସାରି ତାକୁ ଏକ ଅନ୍ଧାର ଘରେ ମୋ ଭିତରୁ ବାହାର କରି ନିଆଯାଏ—କେତେକ

ରାସାୟନିକ ଦ୍ରବଣ ଭିତରେ ବୁଡ଼ାଇ ଦିଆଯାଏ । ଏହାଦ୍ୱାରା ବସ୍ତୁର ଛବିଟି ସେହି ଫିଲ୍ମ ଉପରେ ଭଲଭାବରେ ଲାଗିରହେ । ଏହି ପ୍ରକ୍ରିୟାକୁ ଇଂରାଜୀରେ 'ଫିକ୍ସିଂ' (Fixing) ବା 'ଲଗାଲଗି' କହନ୍ତି । ଆଗ ଏମିତି ଫଟୋର 'ନେଗେଟିଭ୍' କପି ତିଆରି ହୁଏ ।

ଏହାପରେ ଏକ ଧଳା କାଗଜ ଉପରେ 'ନେଗେଟିଭ୍'ରୁ 'ପଜିଟିଭ୍' ଫଟୋଟି ଉଠାଯାଏ । କାରଣ ନେଗେଟିଭ୍‌ରେ ଓଲଟା ଫଟୋଟି ଉଠିଥାଏ । ଠିକ୍ ଫଟୋଟି ପାଇବାପାଇଁ ଅନ୍ୟ ଏକ ଧଳା କାଗଜ ଉପରେ ତାକୁ ପୁଣି ଉଠାହୁଏ । ଇଂରାଜୀରେ ଏହାକୁ 'ପ୍ରିଣ୍ଟିଂ' (ଛପା) କହନ୍ତି । ଏହା କରାଯିବା ପାଇଁ ପ୍ରଥମେ ଗୋଟିଏ କାଚ ପ୍ଲେଟ୍ ନିଆ ହୁଏ । ତା'ପରେ ସ୍ୱତନ୍ତ୍ର ଧରଣର ପ୍ରସ୍ତୁତ ଏକ ଧଳା କାଗଜ ତା ଉପରେ ସଜାଡ଼ି ରଖାହୁଏ । ନେଗେଟିଭ୍ କପିଟିକୁ ଆଣି ତା ଉପରେ ମାଡ଼ି ରଖି ଦିଆହୁଏ । ତହିଁ ଉପରେ ଆଲୋକ ପକାଇ ନେଗେଟିଭ୍‌ରୁ ପଜିଟିଭ୍ କପିଟିକୁ ଉଠାହୁଏ । ବସ୍ତୁଟିର ଓଲଟା ଛବିଟି ନ ଉଠି ଅବିକଳ ସେଇଭଳି ଠିକ୍ ଫଟୋଟିଏ ଉଠିଯାଏ । ସମୟ ସମୟରେ ଫଟୋଟିକୁ ଆହୁରି ସରସ ସୁନ୍ଦର କରିବା ପାଇଁ 'ଟୋନିଂ' କରାଯାଇଥାଏ । ଏହା ସାଧାରଣତଃ ସୁନାର ଏକ ଲବଣର ଦ୍ରବଣଦ୍ୱାରା କରାହୁଏ । ଏହାଦ୍ୱାରା ଫଟୋଟି ଖୁବ୍ 'ମନୋରମ' ହୁଏ ।

ଏଇ ହେଲା 'ମୋ ଯୋଗେ କେମିତି ଫଟୋ ଉଠାଯାଏ' ତାର ଏକ ମୋଟାମୋଟି ବିବରଣୀ । ଯେତେବେଳେ ବଡ଼ ହୋଇଯିବ, ମୋତେ କିଣି ଫଟୋ ଉଠାଇବା ଅଭ୍ୟାସ କରିବ । ଫଟୋ କେମିତି ଧୁଆଧୋଇ ହୁଏ ସେସବୁ ଜାଣିବ । ତେଣିକି ସାଙ୍ଗସାଥୀ, ବାପ ମା, ଭାଇଭଉଣୀ ଏମିତିକି ତମ ଖେଳଣା, ବଗିଚା ଘର ପ୍ରଭୃତିର ଫଟୋ ଉଠାଇ ପାରିବ, ସେଇ 'ଫଟୋ' ସବୁ ସାଇତି ରଖିପାରିବ । ପରେ ବେଳେବେଳେ ଦେଖୁଥିବ, ଖୁସି ହେଉଥିବ ।



# ମାମୁଁ ଘରେ ନୂଆ କୁଣିଆ

ଶ୍ରୀ ନନ୍ଦନନ୍ଦନ ମହାପାତ୍ର

କାନ୍ଥଘଣ୍ଟାରେ ଠନ୍ ଠନ୍ ଠନ୍ କରି ବାରଟା ବାଜିଲା । ଘରେ ସମସ୍ତେ ନିଦ୍ରାଦେବୀଙ୍କ କୋଳରେ । ମୋତେ କ'ଣ ନିଦ ହେବ ନାହିଁ ? ଆଜି ଶୀଘ୍ର ଶୋଇବାକୁ ହେବ, ନଚେତ୍ କାଲି ସକାଳୁଆ ସ୍କୁଲ, ଡେରିରେ ଗଲେ ସ୍କୁଲ ବାରଣ୍ଡାରେ ଆଣ୍ଠେଇବାକୁ ପଡ଼ିବ । ଏହା ଭାବୁଥିବି କି ନାହିଁ ଆଖି ମୁଦି ହୋଇଯାଇଥିବ । ଦେଖିଲି—

ବାପା ଓ ବୋଉ ମୋତେ ନେଇ ରକେଟ୍ ଷ୍ଟେସନ୍‌ରେ ଛାଡ଼ିଦେଇ ଗଲେ । ସେଠାରେ ସେମାନଙ୍କର ଲୋକଜଣେ ଥିଲେ । ତାଙ୍କୁ ରକେଟ୍‌ଲୋକ କହନ୍ତି । ତାଙ୍କ ଭଳିଆ ଆହୁରି ଅନେକ ଲୋକ ବି ଥିଲେ । ସେଠାରେ ବହୁତ ରକେଟ୍ ଥୁଆ ହୋଇଥିଲା । ସେଗୁଡ଼ିକୁ ଦେଖି ମୋତେ ଭାରି ଭୟ ଲାଗିଲା । ଆଗରୁ ମୁଁ କେବେ ରକେଟ୍ ଦେଖି ନ ଥିଲି । ତାହାର ଉଚ୍ଚତା ପ୍ରାୟ ଏକ ଦଶ ମହଲା ଘରର ଉଚ୍ଚତା ସହିତ ସମାନ ହେବ । ମୋ ପାଖରେ ସେହି ରକେଟ୍ ଲୋକଜଣକ ଥିଲେ । ସେ ମୋତେ ସବୁ ଜିନିଷ ଦେଖାଇ ଦେଉଥିଲେ । ସେ କହିଲେ— "ଏହି ରକେଟ୍ ହେଉଛି ତିନି ଭାଗରେ ବିଭକ୍ତ !' ତାହା ପରେ ମୁଁ ଓ ଅନ୍ୟ କେତେକ ରକେଟ୍ ଲୋକ ଏକ ଲିଫ୍ଟ ମାଧ୍ୟମରେ ରକେଟ୍‌ର ପ୍ରଥମ ଭାଗକୁ ଗଲୁ । ଲିଫ୍ଟରେ ଯିବାକୁ ମୋତେ ଭୟ ଲାଗିଲା ନାହିଁ । କାରଣ ମୁଁ ତ କଟକ ବଡ଼ଡାକ୍ତରଖାନାରେ ଥିବା ଲିଫ୍ଟରେ ଆଗରୁ ବସିଥିଲି ।

ମୋତେ ଭାରି ଖୁସି ଲାଗୁଥାଏ । ସେହି ରକେଟ୍‌ଲୋକ ମୋତେ ଗୋଟିଏ କୋଠରୀ ଭିତରକୁ ନେଇଗଲେ ଯେଉଁଥିରେ ଦୁଇଟି ଆରାମ

ଚଉକ ପଡ଼ିଥିବ । ଚଉକିର ହାତ ସିଟରେ ବେଲ୍ଟ ଥାଏ । ପାଖରେ ଦୁଇଟି ସ୍ୱିଚ୍ ଥିଲା ତାହା ଏକ ଟେଲିଭିଜନ ସହ ଲାଗିଥାଏ । ଆମେ ଦୁହେଁ ଯାଇ ସେଠାରେ ବସିଲୁ । ତାହା ପରେ ରକେଟ ଗର୍ଜନ କରି ଉପରକୁ ଉଠିଲା । ରକେଟ୍ ଉପରକୁ ଉଠିଲାବେଳେ ମୋତେ ତଳକୁ ପଡ଼ିଗଲା ପରି ଲାଗୁଥାଏ, କିନ୍ତୁ ସେହି ସିଟ୍ ବେଲ୍ଟ ମୋତେ ଜାବୁଡ଼ି ଧରିଥିଲା ।

ଆମେ ମହାଶୂନ୍ୟର କେଉଁଠି ଅଛୁ ଜାଣିବା ପାଇଁ ଆମ ଆଗରେ ଥିବା ଟେଲିଭିଜନ୍‌କୁ ଚାହିଁଥାଉ । ଟେଲିଭିଜନରେ ଦେଖିଲି—ତାରାଗୁଡ଼ିକ ମିଟି ମିଟି ହେଉଛନ୍ତି । ରକେଟ ଲୋକ ଜଣକ ମୋତେ କହିଲେ—'ତାରା ନୁହେଁ, ସେଇଟି ହେଉଛି ଆମ ମହାଶୂନ୍ୟ ଷ୍ଟେସନ । ସେଠିକି ଆମ ରକେଟ ଯିବ ।' ମୋ ମନ ଭାରି ଖୁସି ହୋଇଗଲା । ଏହି ସମୟ ମଧ୍ୟରେ ଆମ ରକେଟ୍‌ରେ ଦିଶୁଥିବା ଭାର କେତେବେଳେ ତଳକୁ ଖସି ଗଲାଣି ମୋତେ ଆଦୌ ଜଣାପଡ଼ି ନ ଥାଏ । ଆମେ ରକେଟର ଶେଷ ଭାଗରେ ଥାଉ ।

ଆମେ ଯାଇ ସେହି ମହାଶୂନ୍ୟ ଷ୍ଟେସନରେ ପହଞ୍ଚିଲୁ । ସେହି ଷ୍ଟେସନ ବହୁତ ବଡ଼ । ଦେଖିବାକୁ ଏକ 'ମୁଦି' ଭଳି । ତାହା ସବୁବେଳେ ଘୂରୁଥାଏ । ଆମ ରକେଟ ଯାଇ ସେଠାରେ ଲାଗିଲା । ସେଠାରେ କେତେ ଲୋକ ଥିଲେ ଯେଉଁମାନେ କି ଆମ ରକେଟକୁ ନେଇ ଲୁହା କଡ଼ରେ ସେହି ଷ୍ଟେସନ ସହିତ ବାନ୍ଧିଦେଲେ । ସେତେବେଳେ ମୁଁ ପ୍ରଥମ ଥର ପାଇଁ ନିଜ ବେଲ୍ଟ ଖୋଲିଲି । ଖୋଲିବା ସଙ୍ଗେ ସଙ୍ଗେ ମୁଁ ଉଡ଼ିବାକୁ ଆରମ୍ଭ କଲି । ପ୍ରଥମେ ପ୍ରଥମେ ମୋତେ ଭାରି ଡର ଲାଗିଲା, କିନ୍ତୁ ଯେତେବେଳେ ଦେଖିଲି ମୋ ପାଖରେ ବସିଥିବା ରକେଟ ଲୋକ ମଧ୍ୟ ଉଡ଼ୁଛନ୍ତି ମୋତେ ଭାରି ମଜା ଲାଗିଲା ।

ମହାଶୂନ୍ୟ ଷ୍ଟେସନଟା ମୋତେ ଠିକ୍ ଆମ ପୃଥିବୀପରି ଲାଗିଲା । ସେଥିରେ ହୋଟେଲ,ଥିଏଟର, ଖେଳପଡ଼ିଆ ପ୍ରଭୃତି ଥାଏ । ସେଠାରେ ଅଳ୍ପ ସମୟ କଟାଇଲା ପରେ ମୋର ମନ ଭାରି ଉଚ୍ଛନ୍ନ ହେଲା ଚନ୍ଦ୍ରକୁ ଯିବାପାଇଁ । ସେହି ରକେଟ ଲୋକ ଜଣକ ସଙ୍ଗେ ସଙ୍ଗେ ଟେଲିଭିଜନ ଅନ କରି ମୋତେ ଗୋଟିଏ ଆଶ୍ଚର୍ଯ୍ୟ ଜିନିଷ ଦେଖାଇଲେ । ସେ

ମେତେ କହିଲେ — 'ତାହା ହେଉଛି ଚନ୍ଦ୍ର-ଜାହାଜ ଯେଉଁଥିରେ ଆମେ ବର୍ତ୍ତମାନ ଚନ୍ଦ୍ରକୁ ଯିବା ।' ସେହି ଜାହାଜଟି ଗୋଟିଏ ଗୁରପୋକ ପରି ଦିଶୁଥାଏ ।

ମହାଶୂନ୍ୟ ଷ୍ଟେସନ ଗୁଡ଼ ଆମେ ଚନ୍ଦ୍ର-ଜାହାଜରେ ଯାଇ ବସିଲୁ । ବଡ଼ ଶବ୍ଦ କରି ଆମ ଚନ୍ଦ୍ର-ଜାହାଜ ଉପରକୁ ଉଠିଲା । ସବୁଠୁ ମଜା କଥା ହେଲା—ଚନ୍ଦ୍ର-ଜାହାଜରେ ନିଜ ନିଜର ବେଲ୍‌ଟ୍‌ଗୁଡ଼ିକୁ ଖୋଲିଦେବାମାତ୍ରେ, ଆମେ ସମସ୍ତେ ଯାନ ଭିତରେ ଉଡ଼ିଲୁ । ଲୋକମାନେ ସମସ୍ତେ ଉଡ଼ିଲାବେଳେ ନିଜ ନିଜ କାମସବୁ କରୁଥାନ୍ତି । କେତେକ ଲୋକ ଘରର ଗୋଟିଏ କୋଣରେ ଟେଲିଭିଜନ୍ ଦେଖୁଥାନ୍ତି, କେତେ ଜଣ ଚେସ୍, ଲୁଡ଼ୁ, ତାସ୍ ଖେଳୁଥାନ୍ତି, ଆଉ କେତେକ ଖିଆପିଆ କରୁଥାନ୍ତି । କିନ୍ତୁ ମୁଁ ଉଡ଼ି ଉଡ଼ି ରକେଟ୍ ଲୋକ ସହିତ ବ୍ୟାଡ୍‌ମିଣ୍ଟନ୍ ଖେଳିଲି । ସେତେବେଳେ ଟେଲିଭିଜନ୍‌ରେ ଦେଖିଲାବେଳକୁ ଚନ୍ଦ୍ର ଏକ ବଡ଼ ପେଣ୍ଡୁ ପରି ଦିଶୁଥିଲା ।

ଅଳ୍ପ ସମୟ ପରେ ଆମ ଚନ୍ଦ-ଜାହାଜ ଯାଇ ଚନ୍ଦ୍ରରେ ପହଞ୍ଚିଲା । ଚନ୍ଦ୍ରରେ ପହଞ୍ଚିଯାଇ ମୁଁ ରକେଟ୍ ଲୋକଙ୍କୁ ପଚାରିଲି— 'ଆମ ବିଜ୍ଞାନ ସାର୍ କହୁଥିଲେ ଚନ୍ଦ୍ରରେ ବାୟୁ ଓ ମାଧ୍ୟାକର୍ଷଣ ଶକ୍ତି ନାହିଁ । ସେଠାରେ କୌଣସି ଲୋକ ରହିପାରିବେ ନାହିଁ । ଆମେ କେମିତି ବୁଲିବା ?'

ରକେଟ୍ ଲୋକଜଣକ କହିଲେ—'କିଛି ବ୍ୟସ୍ତ ହେବାର ନାହିଁ । ମହାଶୂନ୍ୟ ପୋଷାକ ପିନ୍ଧ । ମୁଁ ଗୋଟିଏ ମହାଶୂନ୍ୟ ପୋଷାକ ପିନ୍ଧାଇଲି । ପିଠିରେ ଗୋଟିଏ ଅମ୍ଳଜାନ ସିଲିଣ୍ଡର ଲଗାଇ ଦେଲି । ମୋ ଛାତିରେ ଗୋଟିଏ ଛୋଟ ରେଡ଼ିଓ ଷ୍ଟେସନ୍ ଲାଗିଥାଏ, ତାହାଦ୍ୱାରା ଚନ୍ଦ୍ରରେ ଭଲ କଥା କହିଲେ ଅନ୍ୟ ଜଣେ ଶୁଣିପାରିବ । ଆମେ ସମସ୍ତେ ଏହି ଚନ୍ଦ୍ର ପୋଷାକ ପିନ୍ଧି ଚନ୍ଦ୍ରରେ ବୁଲିଲୁ । ସେଥିପାଇଁ ଗୋଟିଏ ଚନ୍ଦ୍ର-ଟ୍ୟାକ୍ସି ଭଡ଼ା କଲୁ । ଚନ୍ଦ୍ର ପୃଷ୍ଠରେ ସବୁଠି ଖାଲି ଖାଲୁଆ ଜାଗା । ଆମେ ମାତ୍ର ପାଞ୍ଚ ପାହୁଣ୍ଡରେ ଏକ ପାହାଡ଼ ଉପରେ ପହଞ୍ଚିଲୁ । ଚନ୍ଦ୍ରରେ ଠିଆ ହୋଇ ଦେଖିଲି—ଆକାଶରେ ଗୋଟିଏ

ବଡ଼ ବନ୍ଧୁ। ସେଇଟା କ'ଣ ପଚାରିବାରୁ ରକେଟ୍ ଲୋକଜଣକ କହିଲେ—ତାହା ହେଉଛି ମଙ୍ଗଳ ଗ୍ରହ ଯେଉଁଠିକୁ ଆମେ ଆଉ ଅଳ୍ପଦିନ ପରେ ବୁଲିଯିବା।

ମୁଁ ଆଉ କ'ଣ ପଚାରିବି ଭାବୁଥାଏ—ହଠାତ୍ ମୋ ଆଖି ଖୋଲିଗଲା। ମୋ ସ୍ୱପ୍ନ ଭାଙ୍ଗିଗଲା। ଦେଖିଲି—କାନ୍ଥ ଘଣ୍ଟା ଖାଲି ଟିକ୍ ଟିକ୍ ହେଉଛି।



# ବେତାର

ଶ୍ରୀ ସୁନୀଲ ମିଶ୍ର

ସେଦିନ ଶନିବାର ଥାଏ, ଛୁଟି ବି !

ସୋଫି, ରତନ, ଜଗା, ବଳିଆ, ଲେନି, ଲିସା ସକାଳୁ ରେଡ଼ିଓ ପାଖେ ରୁଣ୍ଡ ହୋଇଥାଆନ୍ତି । କାହା ହାତରେ ଥାଏ କେକ୍, କାହା ହାତରେ ଥାଏ ଛେନା ପୋଡ଼ପିଠା, କିଏ ବିସ୍କୁଟ୍ ଧରିଥାଏ, କିଏ ଧରିଥାଏ ଚାଉଁରୁଟି । ସମସ୍ତେ ଖାଉଥାଆନ୍ତି ।

ରେଡ଼ିଓରେ ସମ୍ବାଦ ଶୁଭୁଥାଏ ।

ସମ୍ବାଦ ସରିଗଲା ।

ସମସ୍ତେ ହାତତାଳି ଦେଲେ ।

ଏଥର ପ୍ରାଥମିକ ବିଦ୍ୟାଳୟ କାର୍ଯ୍ୟକ୍ରମ ଆରମ୍ଭ ହେବ ।

ପୁଣି ସବୁ ଛୁଏ ହାତତାଳି ଦେଲେ ।

ସବୁରି ମୁଖରେ ହସ ।

ବିଦ୍ୟାଳୟ କାର୍ଯ୍ୟକ୍ରମ ଆରମ୍ଭ ହୋଇଗଲା ।

ଗପ ।

ଗୀତ ।

ଆଉ କେତେ କଥା ?

କେକ୍‌ଖିଆ ଚାଲିଥାଏ ।

ଛେନା ପୋଡପିଠା ଖିଆ ଚାଲିଥାଏ ।

ବିସ୍କୁଟ୍‌ଖିଆ ଚାଲିଥାଏ ।

ଏତିକବେଳେ ଆଠ ବରଷର 'ପରମା' ଘରର ଗୁଳକର ଯେଉଁ ଘରରେ ରେଡ଼ିଓଟି ଥିଲା, ସେଇ ଘରକୁ ପଶି ଆସିଲା ଗୁଞ୍ଜୁଣି ଧରି । ଘର ଓଳାଇବ !

ରେଡ଼ିଓଁରୁ ଗପ ଶୁଣିବ ।

ରେଡ଼ିଓରୁ ଗୀତ ଶୁଣିବ ।

ଗୁଳକର ହେଲେ ବ କାହାକୁ ଗପ, ଗୀତ ବା ଭଲ ନ ଲାଗେ ।

ପରମା ତ ସହଜେ ପିଲା ।

ଏ କ'ଣ ? ସେ ଯେ ବେଗି ବେଗି ଓଳାଉ ନାହିଁ । ଟିକଏ ବସି ବସି ଓଳାଉଛି ।

ରେଡ଼ିଓ ହସ କଥା କହିଲେ ହସୁଛି ବ ।

ଗୀତ ବାଜଲେ ଚଟାଣକୁ ଠୁକି ତାଳ ଦେଉଛି ।

ଏଁ, ମଠ କରୁଛି ପରମା ଘର ଓଳାଇବା ପାଇଁ ଗୋଟିଏ ଭଲ ଗପ କଏ ଜଣେ ରେଡ଼ିଓରେ କହିଲେ ସେ ।

ମନ ତନ ଦେଇ ପରମା ଶୁଣୁଛି !

ଏହା ଭିତରେ କେତେବେଳେ ପଶି ଆସିଲେ ଜଗା ବଳଆର ମାଆ । ଗୁଳକର ଟୋକାର କାନ ମୋଡ଼ି କହିଲେ—'ଆରେ ! ଗୋଟିଏ ବୋଲା ଘର ଓଳାଇବା ପାଇଁ ଏତେ ମଠ କରୁଛୁ ! ଦେଖୁନାହୁଁ ପିଲା-ମାନଙ୍କ ହାତରେ କେକ୍, ଛେନା, ପୋଡପିଠା—ତୋର ଓଳାଇବା ସମୟରେ ଧୂଳି ଆସି ଏଇ ଖାଇବା ଜନଷରେ ପଡୁଛି । କେତେ ଗୀଜାଣୁ ସହରସାରା ଘୂରି ବୁଲୁଛନ୍ତି । ଯା' ବାହାର ଏ ଘରୁ...... ।'

ଏତକ କହି ଜଗା ବଳଆର ମାଆ ସେଇ କୋଠରୀରୁ ବାହାର କରିଦେଲେ ।

ରେଡ଼ିଓର ଗପ ଶୁଣି ପିଲାମାନେ ହସି ହସି ଢେ଼ ଯାଉଥାଆନ୍ତି ।

ପରମା ଆଖିରେ ଲୁହ ।

ତା' ହାତରେ କେକ୍ ନାହିଁ, ଛେନା ପୋଡ଼ପିଠା ନାହିଁ, ବିସ୍କୁଟ ନାହିଁ ? ଆଜ···ଆଜ ତା ମା'— ? କେଉଁ ଦୂର ଗାଁରେ, ସେଠାରେ କି କେଉଁ ହଲରେ ଥିବ କେ ଜାଣେ ! ତାର ଭଉଣୀ, କେଉଁ ଘରେ ବାସନ ମାଜୁଥିବ । ସବୁ ମନେପଡ଼ିଲା ପରମାର । ପରମା ଆଖିରୁ ଲୁହ ପୋଛିଲା ।

ଜଗା ବଳଆଉ ମାଆର ପାଠ ଶୁଣୁଛି ।

ପରମା ଆଖିରେ ଲୁହ ମଧ୍ୟ ଧାର ଧାର ଗଡ଼ି ଯାଉଛି ।

ସକାଳ ଯାଇ ସନ୍ଧ୍ୟା ହେଲା ।

ସନ୍ଧ୍ୟାହେଲାରୁ ଜଗାକୁ ଏକଲା ପାଇ ପରମା ପଚାରିଲା ଜଗାକୁ— 'ଜଗୁବାବୁ, ସକାଳର ରେଡ଼ିଓ ତୁମେ ଶୁଣୁଥିଲ ନା ? ମୋତେ କହିବ ଜଗୁବାବୁ, ବାଘ ସେ ମଣିଷକୁ ଖାଇଲା କି ଛାଡ଼ିଦେଲା··· ।'

ଜଗା ହସିଲା, କହିଲା—'ଛାଡ଼ିଦେଲାରେ, ଯେତେବେଳେ ମାଡ଼ି ବସିଲା ତା' ଉପରେ—' ସେତିକିବେଳେ ତେଣେ ପାଟି ଶୁଭିଲା—'ପରମା, ବାସନ ମାଜ୍ । ହାତ ବୋହଲ କରୁଛୁ କି ? ଏଁ !



# କାଗଜ ପୋଷାକ

ଅଧ୍ୟାପକ ବିଜୟ କୁମାର ପଟ୍ଟନାୟକ

ଏମ. ଏସ୍. ସି. ପରୀକ୍ଷା ଦେଇସାରି ରମାକାନ୍ତ ଛୁଟିରେ ଗାଁକୁ ଆସିଥାଏ । ରମାକାନ୍ତର ଆସିବା ଖବର ପାଇ ପିଲାମାନେ ଭାରି ଖୁସି— କାରଣ ସନ୍ଧ୍ୟାବେଳେ ଗପର ଆସରଟି ବେଶ୍ ଜମିବ । ରମାକାନ୍ତର ସାନଭାଇ ବୁନୁ ତାର ସାଙ୍ଗ ରାଜେନ୍ଦ୍ର ଓ ରବିକାନ୍ତଙ୍କୁ ସନ୍ଧ୍ୟାବେଳେ ଘରଆଡ଼େ ଆସିବା ପାଇଁ କହିଥାଏ ।

ସନ୍ଧ୍ୟାହେବା ଆଗରୁ ସମସ୍ତେ ରମାକାନ୍ତ ପାଖରେ ଆସି ହାଜର —ଭଲ ଗପଟିଏ ଶୁଣିବା ପାଇଁ । ପିଲାମାନଙ୍କର ଉତ୍କଣ୍ଠା ଭାଙ୍ଗି ନ ପାରି ରମାକାନ୍ତ ସେମାନଙ୍କୁ ପାଖରେ ବସାଇଥାଏ—ଗପର ଖିଅଟି ମନେ ମନେ ଯୋଡୁ ଯୋଡୁ ସେ ହଠାତ୍ ପିଲାମାନଙ୍କୁ ପଚାରିଲା ।

'ତୁମେମାନେ କାଚ ଏବଂ ସେଥିରୁ ତିଆରି ହେଉଥିବା ପଦାର୍ଥମାନଙ୍କର ବ୍ୟବହାର ତ ଜାଣ, କିନ୍ତୁ ସେହି କାଚରୁ କିପରି କାଚସୂତା ତିଆରି ହୋଇ ସେଥିରୁ ଲୁଗାପଟା ପୋଷାକମାନ ତିଆରି ହୋଇପାରୁଛି ତୁମେ ଜାଣିଛ କି ? ଆଜି ମୁଁ ସେ ବିଷୟରେ ତୁମ-ମାନଙ୍କୁ କହିବି ।''

ତୁମ୍ଭେମାନେ ତ ଜାଣ ଯେ ଦୈନନ୍ଦିନ ଜୀବନ ନିର୍ବାହରେ କାଚ ଏବଂ କାଚରୁ ପ୍ରସ୍ତୁତ ଜିନିଷଗୁଡ଼ିକ ବହୁଳଭାବରେ ବ୍ୟବହୃତ ହୁଏ । ବୈଦିକ ଯୁଗରେ ଯେତେବେଳେ କି ଆମ ଦେଶରେ ବିଜ୍ଞାନର ବିଭିନ୍ନ ବିଭାଗରେ ଉତ୍କର୍ଷ ସାଧିତ ହୋଇଥିଲା, ସେତେବେଳେ ମଧ୍ୟ କାଚର ବ୍ୟବହାର ବିଷୟ ଉଲ୍ଲେଖ ରହିଅଛି । କାଚକୁ ତରଳାଇ ଓ

ପୂର୍ବରୁ ସେଥିରୁ ବିଭିନ୍ନ ପ୍ରକାରର ପଦାର୍ଥମାନ ତିଆରି କରିବାର ପଦ୍ଧତି ପ୍ରଥମେ ଅଗଷ୍ଟସ୍‌ଙ୍କର ରାଜତ୍ୱ ସମୟରେ ହୋଇଥିବାର ଜଣାପଡ଼େ। ଏହା ଫଳରେ କାଚଠାଳମାନ ନିର୍ମାଣ କରିବା ସମ୍ଭବପର ହେଲା। ଏହାପରେ ପଦ୍ଧତିରେ ପ୍ରଥମ କାଚପାତ୍ର ଆଜକୁ ପ୍ରାୟ ଦୁଇ ହଜାର ବର୍ଷ ପୂର୍ବେ ଇଜିପ୍ଟ୍‌ରେ ତିଆରି ହୋଇଥିବାର ସୂଚନା ମିଳେ। ଏହା ପରଠାରୁ ଧାରାବାହିକ ଗବେଷଣା ଫଳରେ ଏହି କାଚରୁ ସିଲ୍‌କ ପରି ପ୍ରଶଂସନୀୟ ହୋଇଥିବା ନେକ୍‌ଟାଇ, ଦୁଆର ଓ ଝରକା ପର୍ଦ୍ଦାମାନ ଆଜ ତିଆରି କରିବା ସମ୍ଭବପର ହୋଇଅଛି।

କାଚରୁ ଯେ ନେକ୍‌ଟାଇ ଆଦି ତିଆରି ହୋଇ ପାରୁଛି, ଏ କଥା ଶୁଣି ପିଲାମାନେ ସ୍ତମ୍ଭୀଭୂତ, ହଠାତ୍ ବୁନୁ ପଚାରିଲା।

'ଦାଦା, କାଚ ପରି ଗୋଟିଏ କଠିନ ଏବଂ ଭଙ୍ଗୁର ପଦାର୍ଥରୁ ନେକ୍‌ଟାଇ ଆଦି ତିଆରି ହେବାଟା ଅସମ୍ଭବ ପରି ଜଣାପଡ଼ୁଛି।'

ରମାକାନ୍ତ ବୁନୁକୁ ବୁଝାଇବା ପାଇଁ କହିଲେ 'କେବଳ ନେକ୍‌ଟାଇ ନୁହେଁରେ ବାବୁ, ଏଥିରୁ ମଧ୍ୟ ସୁନ୍ଦର ଦୁଆର ଓ ଝରକା ପର୍ଦ୍ଦା, ଟେବୁଲ କନା, ହାତବ୍ୟାଗ୍, ବିଛଣା ଚାଦର, ପ୍ରଦୀପ-ରଶ୍ମି ଆଚ୍ଛାଦକ (Lamp shade) ଏବଂ ପୋଷାକପତ୍ର ପରି ବହୁ ସୌଖିନ୍ ତଥା ଆକର୍ଷଣୀୟ ପଦାର୍ଥମାନ ତିଆରି ହୁଏ।

'ଏହା କେମିତି ତିଆରି ହୁଏ ଦାଦା ? କାଚ ପରା ଏକ କଠିନ, ସ୍ୱଚ୍ଛ ଓ ଭଙ୍ଗୁର ପଦାର୍ଥ ତାହା ମଧ୍ୟଦେଇ ଆଲୋକ ସଞ୍ଚାରଣ କରିପାରେ।

ହଁ ସେଥିପାଇଁ କାଚକୁ ଏକ ବିଶେଷ ଉପାୟରେ ସୂକ୍ଷ୍ମ, ନରମ ଓ ଉଜ୍ଜ୍ୱଳ ତନ୍ତୁରେ ପରିଣତ କରାଯାଏ ସେହି ତନ୍ତୁରୁ ଏ ସମସ୍ତ ପଦାର୍ଥ ତିଆରି କରାଯାଇଥାଏ। ଏହି ତନ୍ତୁଗୁଡ଼ିକ ଅନେକ ଗୁଣରେ ପ୍ରାକୃତିକ ଏବଂ ସାଂଶ୍ଳେଷିକ ତନ୍ତୁ ଅପେକ୍ଷା ଉତ୍କୃଷ୍ଟତର। ଏହି ତନ୍ତୁଗୁଡ଼ିକୁ ଦୀର୍ଘଦିନ ଧରି ବ୍ୟବହାର କରିହୁଏ ଏବଂ

ଏହାର ରଙ୍ଗ ଧରି ରଖିବାର ସାମର୍ଥ୍ୟ ଅଧିକ । ଅଧିକନ୍ତୁ କେତେକ ସାଂଶ୍ଲେଷିକ ତନ୍ତୁ ଶରୀର ଉପରେ ପ୍ରତିକ୍ରିୟା ସୃଷ୍ଟି କରୁଥିବା ସ୍ଥଳେ ଏହି ତନ୍ତୁଗୁଡ଼ିକ ଶରୀର ଉପରେ କୌଣସି ରାସାୟନିକ ପ୍ରତିକ୍ରିୟା ସୃଷ୍ଟି କରନ୍ତିନାହିଁ । ବିଶେଷ କରି ଏଗୁଡ଼ିକ ଅଗ୍ନି-ନିରୋଧକ ହୋଇଥିବାରୁ ଏହା ଏକ ବିଶେଷ ଗୁଣ ବିଶିଷ୍ଟ ତନ୍ତୁ ରୂପେ ପରିଚିତ । ଏହାର ବୈଶିଷ୍ଟ୍ୟ ମଧ୍ୟ ଅନ୍ୟ କେତେକ କ୍ଷେତ୍ରରେ ପରିଲକ୍ଷିତ ହୁଏ । ଏହି ତନ୍ତୁଗୁଡ଼ିକ ସାଧାରଣଭାବେ ରାସାୟନିକ ଦ୍ରବ୍ୟ ସଂସ୍ପର୍ଶରେ ଆସିଲେ ମଧ୍ୟ ସହଜରେ ନଷ୍ଟ ହୁଏ ନାହିଁ । ପ୍ରାକୃତିକ ତନ୍ତୁରୁ ପ୍ରସ୍ତୁତ ଦ୍ରବ୍ୟମାନ ଦୀର୍ଘଦିନ ଧରି ବାୟୁମଣ୍ଡଳର ସଂସ୍ପର୍ଶରେ ଆସିଲେ ବାୟୁମଣ୍ଡଳରେ ଥିବା କ୍ଷୟକାରୀ ଶକ୍ତି ଦ୍ୱାରା ସେଗୁଡ଼ିକର ଆସ୍ତେ ଆସ୍ତେ କ୍ଷୟ ସାଧନ ହୁଏ । କିନ୍ତୁ କାଚରୁ ତିଆରି ହୋଇଥିବା ତନ୍ତୁଗୁଡ଼ିକ ସେପରିଭାବେ ନଷ୍ଟ ହୁଏନାହିଁ ।

ଏହି କାଚତନ୍ତୁ ଅନେକ ଦିନ ଆଗରୁ ବୈଜ୍ଞାନିକମାନଙ୍କ ଦ୍ୱାରା ଆବିଷ୍କୃତ ହୋଇଥିଲେହେଁ ଏହାର ପ୍ରକୃତ ବ୍ୟବହାର କେତେକ ଅସୁବିଧା ଯୋଗୁ ହୋଇପାରି ନ ଥିଲା । ୧୯୩୧ ମସିହା ପରଠାରୁ ଏହାର ବ୍ୟାବସାୟିକ ଉପଯୋଗିତା ପ୍ରତି ଦୃଷ୍ଟି ନିକ୍ଷେପ କରାଗଲା । ବିଗତ ୪୦ ବର୍ଷର ଗଭୀର ଗବେଷଣା ଫଳରେ କାଚତନ୍ତୁର ପ୍ରସ୍ତୁତି ପ୍ରଣାଳୀକୁ ଅର୍ଥନୀତିକ ଦୃଷ୍ଟିକୋଣରୁ ସହଜ କରାଯାଇ ପାରିଛି ଯାହାଫଳରେ କି କାଚରୁ ଏପରି ଅଲୌକିକ ପଦାର୍ଥମାନ ସୃଷ୍ଟି ହୋଇପାରିଛି ।

ହଠାତ୍ ଏପ ମଝିରେ ରଜେନ୍ଦ୍ର ପଚାରିଲା, 'କାଚଭଳି କଠିନ ଓ ଭଙ୍ଗୁର ପଦାର୍ଥରୁ ଏଭଳି ନରମ ତନ୍ତୁ ପ୍ରକୃତରେ ତିଆରି ହୁଏ କେମିତି ଏବଂ ଏହା କାଚପରି ଦେଖାଯାଏ କି ନାହିଁ ?'

ଉମାକାନ୍ତ ତାର ସନ୍ଦେହ ଦୂର କରିବାକୁ ଯାଇ କହିଲା, ''ଯଦିଓ ଏହି ତନ୍ତୁ କାଚରୁ ତିଆରିହୋଇଥାଏ କିନ୍ତୁ ଏଗୁଡ଼ିକ ଆଦୌ କାଚପରି ପ୍ରଶସ୍ତମାନ ହୁଏନାହିଁ । ଏହା ସ୍ପଞ୍ଜପରି ନରମ ଏବଂ ସାଧାରଣ ସୂତାପରି ଗୁଡ଼େଇ ହୋଇହୁଏ । ତେବେ ସାଧାରଣ ସୂତାର ନିଜର ରଙ୍ଗ ଗ୍ରହଣ କରିବାର ଶକ୍ତି ଥିବା ସ୍ଥଳେ ଏହି ତନ୍ତୁଗୁଡ଼ିକ ନିଜେ ରଙ୍ଗକୁ

ଧରି ରଖିପାରନ୍ତି ନାହିଁ । ସେଥିପାଇଁ ଏକ ଭିନ୍ନ ପ୍ରଣାଳୀରେ ରଙ୍ଗୀନ କାଚତନ୍ତୁ ପ୍ରସ୍ତୁତ କରାଯାଇଥାଏ । ପ୍ରଥମେ ତନ୍ତୁ ଉପରେ ଜୈବିକ ରେଜିନ୍ (Resin) ର ଏକ ଆସ୍ତରଣ ଦିଆଯାଏ । ଏହି ଆସ୍ତରଣହିଁ ରଙ୍ଗକୁ ଗ୍ରହଣ କରେ । କାଚ ତିଆରି କରିବାପାଇଁ ଯେଉଁସବୁ ରାସା-ୟନିକ ପଦାର୍ଥ ଦରକାର ହୋଇଥାଏ ଯଥା—ବାଲି, କ୍ଷାରୀୟ ପଦାର୍ଥ, ଚୂନ, ମ୍ୟାଗ୍ନେସିଆ, ଆଲୁମିନା ତଥା ବୋରିକ୍ ଅକ୍ସାଇଡ୍, ସେହି ସମସ୍ତ ପଦାର୍ଥରୁହିଁ କାଚତନ୍ତୁ ତିଆରି ହୋଇଥାଏ । ଏହି ସମସ୍ତ ପଦାର୍ଥରୁ କେତେକ ଭିନ୍ନ ଧରଣର ଯାନ୍ତ୍ରିକ କୌଶଳ ପ୍ରୟୋଗ କରି କାଚତନ୍ତୁ ତିଆରି କରାଯାଏ । ଏହି କାଚତନ୍ତୁ ପ୍ରଥମେ ଆମେରିକାର ଓଏନ୍ସ କର୍ଣ୍ଣିଙ୍ଗ୍ ଫାଇବର-ଗ୍ଲାସ କର୍ପୋରେସନର ବୈଜ୍ଞାନିକ ଗେମ୍ସ୍ଲେଟର ଓ ଟମାସ ପ୍ରଭୃତିଙ୍କର ପ୍ରଚେଷ୍ଟାରେ ପ୍ରକୃତ ରୂପ ନେଇଥିଲା ।

ବର୍ତ୍ତମାନ କାଚତନ୍ତୁ ଦୁଇ ଭିନ୍ନ ଉପାୟରେ ବ୍ୟାବହାରିକ ଭିତ୍ତିରେ ପ୍ରସ୍ତୁତ ହେଉଅଛି । ଗୋଟିଏ କ୍ଷେତ୍ରରେ ଏହା ରୁଆତନ୍ତୁ (Staple fibre) ଭାବରେ ପ୍ରସ୍ତୁତ ହେଉଥିବା ସ୍ଥଳେ ଅନ୍ୟ ଏକ ପ୍ରଣାଳୀରେ ଏହା ଏକ ଧାରାବାହିକ ସୂକ୍ଷ୍ମ ତନ୍ତୁ (Continuous fila-ment) ଭାବରେ ତିଆରି ହୋଇଥାଏ । ରୁଆତନ୍ତୁର ପ୍ରସ୍ତୁତ ପ୍ରଣାଳୀ ସୂକ୍ଷ୍ମତନ୍ତୁର ପ୍ରସ୍ତୁତ ପ୍ରଣାଳୀପରି ଏତେଟା ଜଟିଳ ନୁହେଁ । ତରଳ କାଚର ଏକ କ୍ଷୁଦ୍ର ତଥା ଦ୍ରୁତ ସ୍ରୋତକୁ ବାୟୁର ଅଧିକ ଚାପଦ୍ୱାରା ଏକ ଉତ୍ତପ୍ତ ଛାଞ୍ଚ ମଧ୍ୟକୁ ଠେଲି ଦିଆଯାଏ, ଯାହାଦ୍ୱାରାକି ଛାଞ୍ଚରୁ ୨୫-୪୦ ସେ.ମି. ଲମ୍ବର ରୁଆତନ୍ତୁ ବାହାରି ଆସେ । ଏହି ରୁଆତନ୍ତୁ ଗୁଡ଼ିକ ଏତେ ସୂକ୍ଷ୍ମ ଯେ ହଜାର ହଜାର ରୁଆତନ୍ତୁକୁ ଯଦି ପାଖାପାଖି ଲଗାଇକରି ରଖାଯାଏ ତାହା ଅତି ବେଶିରେ ଏକ ସେଣ୍ଟିମିଟର ମଧ୍ୟ ହୋଇନ-ପାରେ । ଏହି ରୁଆତନ୍ତୁ ଗୁଡ଼ିକ ବଇଫର ସ୍ରୋତପରି ଛାଞ୍ଚ ମଧ୍ୟରୁ ବାହାରି ଏକ ଗତିଶୀଳ ଫିତା (Running belt) ଉପରେ ସଂଗ୍ରହ କରାଯାଏ । ଏହା କାଚ ଉଲ (Glass wool) ନାମରେ ପରିଚିତ । ସାମୟିକ ଭାବେ ଘର୍ଷଣ ହ୍ରାସ ପାଇଁ ରୁଆତନ୍ତୁ ତିଆରି ହେଲାବେଳେ କିଛିଟା ଘର୍ଷଣ ହ୍ରାସ ତେଲ ମଧ୍ୟ ବ୍ୟବହାର କରାଯାଇଥାଏ । କେତେକ ଜଟିଳ ଯାନ୍ତ୍ରିକ ପଦ୍ଧତି ଅନୁସରଣ କଲାପରେ ଏହି ରୁଆତନ୍ତୁରୁ ରେୟନ୍ ସୂତାପରି ବୁଣାସୂତା ତିଆରି ହୁଏ । ଏହି ସୂତାଗୁଡ଼ିକ ସାଧାରଣ

ସୂତାପରି ବୟନ ଶିଳ୍ପରେ ବ୍ୟବହୃତ ହୁଏ । ସମୟେ ସମୟେ ଏହି କାଚସୂତା କାର୍ପାସ ତଥା ଅନ୍ୟାନ୍ୟ ସାଂଶ୍ଲେଷିକ ସୂତା ସଙ୍ଗେ ମିଶାଇ ଏକାଠି ବୟନ କରାଯାଇଥାଏ । ଏହା ଫଳରେ ଆକର୍ଷଣୀୟ ତଥା ଉନ୍ନତ ଧରଣର ପର୍ଦ୍ଦା, ସୋଫା ଏବଂ ଚେୟାରର ଖୋଳମାନ ତିଆରି ହୋଇଥାଏ ।

ଧାରବାହିକ ସୂକ୍ଷ୍ମତନ୍ତୁର ପ୍ରସ୍ତୁତି ପ୍ରଣାଳୀ ରୁଆତନ୍ତୁର ପ୍ରସ୍ତୁତି ପ୍ରଣାଳୀ ପରି ଏତେଟା ସୁବିଧାଜନକ ନୁହେଁ । ଏହା ଏକ ଜଟିଳ ଯାନ୍ତ୍ରିକ ପ୍ରଣାଳୀରେ ତିଆରି ହୁଏ । ଏହି ପ୍ରଣାଳୀରେ ତିଆରି ହେଉଥିବା ତନ୍ତୁଗୁଡ଼ିକ ଏତେ ସୂକ୍ଷ୍ମ ଯେ ତୁଳନାତ୍ମକ ଭାବେ ଦେଖିଲେ ଏହା ଆମ ମୁଣ୍ଡବାଳର ସୂକ୍ଷ୍ମତାର ପନର ଭାଗରୁ ଭାଗେ ହେବ କି ନାହିଁ ସନ୍ଦେହ । ଏହି ସୂକ୍ଷ୍ମ ସୂତାଗୁଡ଼ିକ ସାଧାରଣତଃ ଦୁଇଟି ବା ତିନୋଟି ଏକାଠି କରି ରୂପ ଦିଆଯାଇ ଉପଯୁକ୍ତ ମୋଟେଇ (Thickness) ସୂତା ତିଆରି କରାଯାଇଥାଏ । ସାଧାରଣତଃ ଶକ୍ତିଶାଳୀ କାଚସୂତା ଏହି ଧରଣର କାଚତନ୍ତୁରୁ ହିଁ ତିଆରି ହୋଇଥାଏ । ରୁଆସୂତା ପରି ଏଗୁଡ଼ିକ ମଧ୍ୟ ସୂତାକଳକୁ ପଠାଯାଏ । ସାଧାରଣ ସୂତାକଳର ଯନ୍ତ୍ର ଗୁଡ଼ିକର କିଛିଟା ପରିବର୍ତ୍ତନ କରାଯାଇ ଏହି ପରିବର୍ତ୍ତିତ ଯନ୍ତ୍ରରେ କାଚସୂତାରୁ ବସ୍ତ୍ର ବୟନ କରିବାରେ ବ୍ୟବହାର କରାଯାଇଥାଏ ।

ଏହିପରି ଭାବେ କଥା ଚାଲିଥିବା ସମୟରେ ହଠାତ୍ ରବିକାନ୍ତ ପଚାରିଲେ 'ରମାକାନ୍ତ, ଏହିପରି କାଚସୂତାର ଆଉ ବିଶେଷ ଧରଣରେ ବ୍ୟବହାର କିଛି ଅଛି କି ?'

ରମାକାନ୍ତ ସେମାନଙ୍କର ଆଗ୍ରହ ଦେଖି କହିଲେ 'ହଁ, ଆଜି ଏକ ନୂତନ ଧରଣର କାଚସୂତା ଏବେ ବାହାରିଛି ଯାହାକି ଫାଇବରଗ୍ଲାସ—ବିଟା ନାମରେ ପରିଚିତ ।' ୧୯୬୫ ମସିହାରେ ଆବିଷ୍କୃତ ହୋଇଥିବା ଏହି କାଚସୂତା ଏହି ଶିଳ୍ପକ୍ଷେତ୍ରରେ ଏକ ଆଲୋଡ଼ନ ସୃଷ୍ଟି କରିଛି । ଏହି କାଚସୂତା ବ୍ୟବସାୟ କ୍ଷେତ୍ରରେ ଆଦୃତ ତଥା ବହୁଳ ଭାବରେ ବ୍ୟବହୃତ ହେବା ସଙ୍ଗେ ସଙ୍ଗେ ମହାକାଶ ଗବେଷଣାରେ ମଧ୍ୟ ଯଥେଷ୍ଟ ସହାୟକ ହୋଇଅଛି । ଯଦିଚ ଏହା ଆଜିକୁ

ମାତ୍ର ଦଶବର୍ଷ ହେବ ଆବିଷ୍କୃତ ହେଲଣି ତଥାପି ଏହି ସ୍ୱଳ୍ପ ସମୟ ମଧ୍ୟରେ ଏଥିରୁ ପ୍ରସ୍ତୁତ ବହୁଦ୍ରବ୍ୟ ଯଥେଷ୍ଟ ଲୋକପ୍ରିୟତା ଅର୍ଜନ କଲଣି । ଏହି ତନ୍ତୁଗୁଡ଼ିକର ବିଶେଷତ୍ୱ ହେଉଛି ଏଗୁଡ଼ିକ ଅଗ୍ନି-ନିରୋଧକ ହେବା ସଙ୍ଗେ ସଙ୍ଗେ ସହଜରେ କୁଞ୍ଚି ହୁଏନାହିଁ, ଭାଙ୍ଗ ପଡ଼େନାହିଁ କିମ୍ବା ଏଥିରେ ସହଜରେ ଦାଗ ଲାଗି ରହେ ନାହିଁ । ଏଗୁଡ଼ିକ ହାଲୁକା ହୋଇଥିବାରୁ ମହାକାଶ ଯାତ୍ରୀଙ୍କର ପୋଷାକ ତିଆରି ପାଇଁ ଏହି ଲୁଗା ବ୍ୟବହାର କରାଯାଇଥାଏ ।

ସିନେମା ଘର ଗୁଡ଼ିକର ଧ୍ୱନି ନିୟନ୍ତ୍ରଣ କରିବାପାଇଁ ମଧ୍ୟ ଏହି ତନ୍ତୁ ଗୁଡ଼ିକ ବିଶେଷ ସହାୟକ ହୋଇଥାଏ । ଫାଇବର ଗ୍ଲାସ ବିଠାରୁ ତମ୍ବୁ, ସନ୍ତରଣ ପୋଷାକ ଆଦି ତିଆରି ହୋଇଥାଏ । ଆମେରିକାର ନୌବାହିନୀର ସନ୍ତରଣ ପୋଷାକ ଏହି ସୂତାରୁହିଁ ତିଆରି ହୋଇଥାଏ । ଏପରି ଭାବେ ତିଆରି ହୋଇଥିବା ବସ୍ତ୍ରକୁ ବୈଦ୍ୟୁତିକ ତାରଦ୍ୱାରା ଆଚ୍ଛାଦିତ କରି ପୋଷାକ ଭିତରକୁ ଆବଶ୍ୟକାନୁସାରେ ଉଷ୍ମ କରା-ହୋଇପାରୁଥିବାରୁ ଏଗୁଡ଼ିକ ସନ୍ତରଣରେ ବହୁତ ସାହାଯ୍ୟ କରିଥାଏ ।

କାଚସୂତାରୁ ତିଆରି ହୋଇଥିବା ବସ୍ତ୍ର ସାଧାରଣ କାର୍ପାସ ବସ୍ତ୍ର ଅପେକ୍ଷା ଶକ୍ତିଶାଳୀ ତଥା ଏହା ସହଜରେ ଓଦା ହେଉନଥିବାରୁ ବହୁଦିନ ଧରି ଅକ୍ଷୁର୍ଣ୍ଣ ରହିଥାଏ । ଏପରିକି ଏଥିରୁ ତିଆରି ବସ୍ତ୍ର ସାଧାରଣ ବସ୍ତ୍ର ପରି ଛତାକ ବା ରାସାୟନିକ ପଦାର୍ଥମାନଙ୍କ ଦ୍ୱାରା ମଧ୍ୟ ନଷ୍ଟ ହୁଏ ନାହିଁ । ଆଜିକାଲି କାଚସୂତାରୁ ପ୍ରସ୍ତୁତ ବିଶେଷ ଧରଣର ଫିତା ବୈଦ୍ୟୁତିକ ଯନ୍ତ୍ରପାତିରେ ବ୍ୟବହୃତ ହେଉଅଛି । ଏହିପରି ଫିତାମାନ ବୈଦ୍ୟୁତିକ ତାରରେ ବିଦ୍ୟୁତ ମଟର, ବିଦ୍ୟୁତ ଉତ୍ପାଦକ ଯନ୍ତ୍ର, ଟ୍ରାନ୍‌ସଫର୍ମର ତଥା ଅନ୍ୟାନ୍ୟ ଇଲେକଟ୍ରୋ ମ୍ୟାଗ୍‌ନେଟିକ୍ ଯନ୍ତ୍ର-ମାନଙ୍କରେ ବ୍ୟବହୃତ ହୁଏ । ଏହି କାଚତନ୍ତୁକୁ ପ୍ଲାଷ୍ଟିକ ସଙ୍ଗେ ମିଶାଇ ଏହି ସମ୍ମିଶ୍ରଣକୁ କୌଣସି ଛାଞ୍ଚଉପରେ ଢ଼ଳାଇ କରିବାରେ ମଧ୍ୟ ଏହା ବ୍ୟବହାର କରାଯାଇଥାଏ । ଏପରି ଢ଼ଳାଇ ପଦାର୍ଥମାନ ଅତି କଠିନ ଓ ରାସାୟନିକ ପଦାର୍ଥମାନଙ୍କ ଦ୍ୱାରା ସହଜରେ କ୍ଷୟପ୍ରାପ୍ତ ହୁଏ ନାହିଁ । ଏଗୁଡ଼ିକ ଆଘାତପ୍ରାପ୍ତ ହେଲେ ସହଜରେ ଭାଙ୍ଗେନାହିଁ । ଏହିପରି ଭାବରେ ଏହା ଅତ୍ୟନ୍ତ ଉତ୍କର୍ଷ ହୋଇଥିବାରୁ ଆଜିକାଲି ଏହି ଧରଣର ସମ୍ମିଶ୍ରଣ ଅଟୋକାର ନିର୍ମାଣ କ୍ଷେତ୍ରରେ 'ଆଲ୍‌ସିନାଇଟ୍-ଫାଇବର ଗ୍ଲାସ' ନାମରେ ବ୍ୟବହୃତ

ହେଉଛି । ତାଛଡ଼ା ଏଥିରୁ ନାନାପ୍ରକାର ସୁଟକେଶ୍, ଏଟେଚକେସ୍ ଆଦି ତିଆରି ହେଉଛି ।

କାଚତନ୍ତୁ ତାର ବ୍ୟବହାର କ୍ରମଶଃ ଏଭଳି ଭାବରେ ବୃଦ୍ଧି ପାଇବାକୁ ଲାଗିଲାଣି ଯେ ଦିନ ଆସିବ ଯେତେବେଳେ ଏହି ସୂତାରେ ନିର୍ମିତ ବହୁ ମୂଲ୍ୟବାନ ବସ୍ତ୍ର ସିଲ୍କ ଓ କାର୍ପାସ ବସ୍ତ୍ରର ସ୍ଥାନ ଅଧିକାର କରିବ । ଏହି କାଚସୂତାରେ ତିଆରି ବସ୍ତ୍ରଗୁଡ଼ିକ ଚିରଦିନ ଧରି ସ୍ଥାୟୀ ହେବା ସଙ୍ଗେ ସଙ୍ଗେ ଦୃଢ଼ ଓ ସୁନ୍ଦର ମଧ୍ୟ ହେବ । ରସାୟନବିତ୍‌ମାନେ ଆଶା କରନ୍ତି ଯେ ସେମାନେ ଗୋଟିଏ ନୂତନ ଯୁଗ ଆଡ଼କୁ ଆଗେଇ ଚାଲିଛନ୍ତି । ଯେଉଁ ଯୁଗରେ ବ ଜୈବିକ ବସ୍ତ୍ରର ସ୍ଥାନ ଅଜୈବିକ ବସ୍ତ୍ରଦ୍ୱାରା ଅଧିକୃତ ହେବ । ବୈଜ୍ଞାନିକମାନଙ୍କ ପ୍ରତି ନିଶ୍ଚିତଭାବେ ଏହା ଏକ ଆହ୍ୱାନ ।

ଗପଟିରେ ପିଲାମାନେ ମଗ୍ନ ହୋଇଥିବା ସମୟରେ ହଠାତ୍ ଘର ଭିତରୁ ରମାକାନ୍ତର ମା' ପଶିଆସି କହିଲେ—

'କିରେ ପିଲାଏ ଆଜି କଣ ତୁମର ଗପ ସରିବନି କି ?'

ରାତି ସେତେବେଳକୁ ନଅଟା ବାଜିବା ପାଇଁ ଯାଉଥାଏ । ପିଲାମାନଙ୍କୁ କାଲି ଆଉ ଗୋଟିଏ ଗପ କହିବାର ପ୍ରତିଶ୍ରୁତି ଦେଇ ରମାକାନ୍ତ ସେତିକିରେ ଗପଟି ଶେଷ କଲା ।



# ସୂର୍ଯ୍ୟ ହେ ଆମ ପ୍ରଣତି ଘେନ

## ଅଧ୍ୟାପିକା ଡକ୍ଟର ପ୍ରିୟତମା ଦେଓ

ଗଳବସ୍ତ୍ର ହୋଇ ତୁଳସୀ ଗଛମୂଳରେ ପାଣି ଢାଳିଲେ ସ୍ମିତା ଦେବୀ । ଗୁଣୁ ଗୁଣୁ ହୋଇ ଗାଇଚାଲିଲେ ତୁଳସୀ ସ୍ତୋତ୍ର । ଡାଣ୍ଡ ଦରଜାକୁ ଆଉଜି ଠିଆ ହୋଇ ଦେଖୁଥିଲା ବଡ଼ ପୁଅ ତୁଷାର । ପଢ଼ା ଘର ଟେବୁଲରେ ମୁହଁ ମାଡ଼ିଦେଇ ଅଙ୍କ କଷୁଥିଲା ସାନଝିଅ ମାମୁନ । ଭୁନ ଭୁନ କରି ତାକୁ ଡାକିଲା ତୁଷାର— 'ମାମି, ଆ ଦେଖିବୁ କୋଟେ ମଜା କଥା ।' ମୁଣ୍ଡ ଟେକି ନନା ମୁହଁକୁ ଅନାଇଲା ମାମି—'କ'ଣ କରେ ?' ତୁଷାର କହିଲା—'ଚାଲ ଦେଖିବୁ, ଆମ ବୈଜ୍ଞାନିକା ମା' କେମିତି ତୁଳସୀ ଗଛକୁ ମୁଣ୍ଡିଆ ମାରି ଆମ ମଙ୍ଗଳ କାମନା କରୁଛନ୍ତି ।' ଥଟ୍ଟାଳିଆ ତା'ସ୍ୱର, ଆଉ ମୁହଁରେ ଅବଜ୍ଞାର ହସ । ଗମ୍ଭୀର ଭାବରେ ମାମି କହିଲା – 'ହସ୍ ନାରେ ନନା, ମୁଁ ଥରେ ମା'ଙ୍କୁ ସେଇକଥା କହିଥିଲି । ମା' ଯାହା କହିଲେ ତାକୁ ଶୁଣି ମୋ ମନ କହିଲା ମୁଁ ବି ତୁଳସୀମୂଳେ ପାଣି ଢ଼ାଳି ମୁଣ୍ଡିଆ ମାରନ୍ତି । 'ହଉରେ—'କହିଲା ତୁଷାର । 'ତୁ ଏ ମଜା ଖବରଟା ମୋତେ ଦେଉନୁ କେମିତି ?' ମାମି ଟିକିଏ ସଙ୍କୁଚିତ ହୋଇ କହିଲା—'ତୁ ମା'ଙ୍କୁ ଯେମିତି ଥଟ୍ଟା କରୁଛୁ, ମୋତେ କାଳେ ସେମିତି କରିବୁ, ସେଇ ଭୟରେ ତୋତେ କହିନ ପରା । ମା' କହିଲେ ଆମ ମୁନି ଋଷିମାନେ ପରମ ବିଜ୍ଞାନୀ ଥିଲେ । ଧର୍ମ ସହିତ ସେମାନେ ବିଜ୍ଞାନକୁ ଏପରିଭାବରେ ଜଡ଼ିତ କରିଛନ୍ତି ଯେ ଆଜିର ବିଜ୍ଞାନ ଉନ୍ନତ ସମାଜ ତାକୁ ବୁଝିବାକୁ ବର୍ଷ ବର୍ଷ ଧରି ଗବେଷଣା ଚଳାଇଛି । ସମସ୍ତଙ୍କ ଅଗଣାରେ ଥାଇ ପୂଜା ପାଉଥିବା ତୁଳସୀ ଗଛଟିର ମହିମା ଅସୀମ । ତୁଳସୀର ମୃଦୁ ସୁବାସ ଘରର ବାୟୁମଣ୍ଡଳକୁ ସୁଗନ୍ଧଯୁକ୍ତ କରିଥାଏ । ପୁଣି ଏଇ ସୁବାସ ଆମ ଚରଣରୁ ମଶାଇ ଦେବ । ତନ୍ଦିଆ 'ଓଡ଼ୋମୋସ୍'

ବଦଳରେ ତୁ ଯଦି ତୁଳସୀ ପତ୍ରର ରସ ଦେହରେ ଲଗାଇବୁ, ମଶା ତ ତୋ' ପାଖ ପଶିବେ ନାହିଁ, ତା ସଙ୍ଗେ ସଙ୍ଗେ ଯାଦୁ, କୁଣ୍ଡିଆ ଭଳି ଚର୍ମରୋଗ ବି ତୋତେ ହେବନାହିଁ। ତୁଳସୀର ମୂଳ ଡାଳ ପତ୍ର ସବୁଥିରେ ଔଷଧୀୟ ଗୁଣ ଅଛି। ତୁଳସୀ ପତ୍ରର ରସ କଫ ସଫା କରେ, ସର୍ଦ୍ଦି ଭଲ କରେ, ଜୀର୍ଣ୍ଣ କରାଏ, ରକ୍ତସ୍ରାବ ବନ୍ଦକରେ, ନାକ ରକ୍ତ ଝାଡ଼ା ବନ୍ଦ କରେ, କୃମି ନାଶ କରେ, ବାନ୍ତି ବନ୍ଦ କରେ, ଜୀବାଣୁ ନାଶକରେ, ଯକୃତର କ୍ରିୟା ବଢ଼ାଏ, ହୃତ୍‌ପିଣ୍ଡର ମାଂସ ପେଶୀକୁ ଅଧିକ କାର୍ଯ୍ୟକ୍ଷମ କରାଏ...।' ମାମିଙ୍କ କଥା ଯେମିତି ଶେଷ ହେବାର ନୁହେଁ। ତା' ପାଟିରେ ହାତ ଦେଇ ତୃଷାର କହିଲା—'ବନ୍ଦକର ଏଥର। ତୁ ଯେମିତି କହିବା ଆରମ୍ଭ କଲୁଣି ତୁଳସୀ ଗଛକୁ ଗୋଟିଏ ଔଷଧ ଦୋକାନ ବୋଲି କହିବାକୁ ପଡ଼ିବ।' 'ତୁ ଠିକ୍ କହୁଛୁ ନନା—' 'କହିଲେ ମାମି —'ମା' ଯାହା କହୁଥିଲେ ସବୁସତ, ବିଜ୍ଞାନ ବି ସେକଥା ମାନୁଛି। ତୁ କହ ଯିଏ କୌଣସି ପ୍ରତିଦାନର ଆଶା ନ ରଖି ଆମ ମଙ୍ଗଳ ପାଇଁ ନିଜ ଜୀବନ ଦାନ କରିଛି ତାକୁ ଆମେ ପୂଜା କରିବା ଉଚିତ୍ ନା ନାହିଁ? ପୁଣି କି ଚରମ ସ୍ୱାର୍ଥପରତା ଆମ ପୂଜାରେ। ଜଳପାଇ ହୃଷ୍ଟପୁଷ୍ଟ ହୋଇ ବଢ଼ିଲେ ତ ଗଛଟି ଆମ ଉପକାରରେ ଲାଗିବ, ସେଇଥିପାଇଁ ତୁଳସୀ ଗଛମୂଳେ ଏ ଜଳଢ଼ାଳା ପର୍ବ। ସକାଳୁ ଉଠି ତୁ ମା' ଓ ବାପାଙ୍କୁ ପ୍ରଣାମକରୁ କାହିଁକି କହିଲୁ? ସେମାନେ ଆମକୁ ଜୀବନ ଦେଇଛନ୍ତି, ନିଜ ସୁଖ ସୁବିଧା କଥା ଭୁଲି ଅତି ସ୍ନେହରେ ଆମର ଲାଳନପାଳନ କରୁଛନ୍ତି—ଏଇଥିପାଇଁ ତ? ତେବେ ତୁଳସୀକୁ ପ୍ରଣାମ କରିବାନି କାହିଁକି?' ତୃଷାର ହାରିବାର ପିଲା ନୁହେଁ। କହିଲା—'ହେଲା ଏବେ, ତୁଳସୀଗଛ ଆମର ହିତକାରୀ, ତେଣୁ କୃତଜ୍ଞତା ଜଣାଇଁ ଆମେ ତାକୁ ପୂଜା କରିବା। ଏଇ ସୂର୍ଯ୍ୟ? ତୁ ଜାଣିଛୁ ସୂର୍ଯ୍ୟ ଭଗବାନ ନୁହନ୍ତି; ଗୋଟିଏ ନକ୍ଷତ୍ର ମାତ୍ର। ମା' ପ୍ରତିଦିନ ଜଳଟେକି କେମିତି ଆରମ୍ଭକରି ଦେଉଛନ୍ତି —"ଜବା କୁସୁମ ସଂକାଶମ୍...।' ମୁଁ ତା'ର ଉତ୍ତର ଦେଉଛି—" ସୁମିତା ଦେଖି କହିଲେ। ସୂର୍ଯ୍ୟ ପ୍ରଣାମ ଶେଷକରି କେତେବେଳେ ମା' ଆସି ପଛରେ ଛିଡ଼ା ହୋଇଛନ୍ତି ମାମି କି ତୃଷାର କେହି ତାହା ଲକ୍ଷ୍ୟ କରି ନାହାନ୍ତି।

ଉଭୟେ ଚମକି ଫେରି ଚାହିଁଲେ ମା'ଙ୍କ ଆଡ଼କୁ । ଏ ଚପଳମତି ବାଳକ ବାଳିକାଙ୍କୁ କେମିତି ବୁଝାଇବେ ସୁମିତା ସୂର୍ଯ୍ୟଙ୍କ ମହାତ୍ମ୍ୟ ? ଅଗଣାକୁ ଚାହିଁଲେ ସେ । ତୁଳସୀ ଚଉରାକୁ ଲାଗି ଗୋଲାପ ଗଛଟିଏ । ଗତବର୍ଷ ନନ୍ଦନକାନନରୁ ଚାରାଟିଏ ଆଣି ବଡ଼ ଯତ୍ନରେ ଲଗାଇଥିଲେ ମାମି । ଗାଢ଼ ନାଲି ରଙ୍ଗର ବଡ଼ ବଡ଼ ଫୁଲରେ ଗଛଟା ଭର୍ତ୍ତି । ଝରକା ବାଟେ ବାଡ଼ିପଟର ବଗିଚା ଦେଖାଯାଉଛି । ବିଲାତି ବାଇଗଣ, କୋବି ଚାରାସବୁ ଭୁଷାଇ ନିଜ ହାତରେ ଲଗାଇଥିଲେ । ପାଚେରୀ କଡ଼କୁ ଲାଗି କଲମି ଆମ୍ବ ଗଛଟିରେ ପେନ୍ଥା ପେନ୍ଥା ବଉଳ । ଶାନ୍ତ ସ୍ୱରରେ ସୁମିତା କହିବା ଆରମ୍ଭ କଲେ—'ଏଇ ଗୋଲାପ ଗଛଟିକୁ ଦେଖ । ସୂର୍ଯ୍ୟ କିରଣ ନ ପାଉଥିଲେ ଫୁଲଗଛରେ ଡାଳଗୁଡ଼ା ମାଟିରେ ଲାଗି ଯାଉନଥାନ୍ତା । ବଗିଚାରେ ପୁଞ୍ଜାପୁଞ୍ଜା ସବୁଜ ନାଲି ବିଲାତି ବାଇଗଣ, ଏତେ ବଡ଼ ବଡ଼ ଫୁଲକୋବି ଦେଖି ଖୁସିରେ ମନ ନାଚି ଉଠୁ ନଥାନ୍ତା କି ବଉଳର ସୁବାସରେ ଆମଘର ବନବାଡ଼ ମହକୁ ନଥାନ୍ତା । ସୂର୍ଯ୍ୟ ନଥିଲେ ଶସ୍ୟଶ୍ୟାମଳା ମାଟି ମା'ର ବକ୍ଷ ବରଂ ଶୂନ୍ୟତାରେ ହାହାକାର କରୁଥାନ୍ତା । ତୁମେ ସବୁ ଜାଣିଛ ପଶୁ ପକ୍ଷୀ, କୀଟ ପତଙ୍ଗ, ଗଛ, ଡାଳ, ଚେର ଫୁଲ ଫଳ ଖାଇ ଜୀବନ ଧାରଣ କରନ୍ତି । ଆମେ ମଣିଷମାନେ ବି ଖାଦ୍ୟପାଇଁ, ପରିଧାନ ପାଇଁ ମୁଖ୍ୟତଃ ସେଇ ଗଛ ଲତା ଉପରେ ନିର୍ଭର କରୁଥାଉଁ । ତେଣୁ ଉଦ୍ଭିଦଶୂନ୍ୟ ଧରାପୃଷ୍ଠରେ ଜୀବଜଗତ ବଞ୍ଚିରହିବା ସମ୍ଭବ ନୁହେଁ । ଏଇଥିରୁ ତୁମେ ନିଶ୍ଚିତ ରୂପେ ବୁଝିପାରୁଥିବ ଯେ ଆମର ସୃଷ୍ଟି ଓ ପାଳନ ନିମନ୍ତେ ସୂର୍ଯ୍ୟ କେତେମାତ୍ରାରେ ଦାୟୀ ।

ଖାଲି ସେତିକିରେ ଯେ ଆମ ଜୀବନରେ ସୂର୍ଯ୍ୟଙ୍କ ଭୂମିକା ଶେଷ ହେଲା, ତା ନୁହେଁ । ଆଜିର ସଭ୍ୟତା ଗଢ଼ି ଉଠିବା ମୂଳରେ ସୂର୍ଯ୍ୟଙ୍କ ଦାନ ଅତୁଳନୀୟ । ସହଜ, ସୁଖମୟ ଜୀବନ ଯାହାପାଇଁ ଆମର ଯେତେ ଯାହା ଆବଶ୍ୟକ ସବୁଥିରେ ପ୍ରତ୍ୟକ୍ଷରେ ହେଉ ବା ପରୋକ୍ଷରେ ହେଉ ସୂର୍ଯ୍ୟାଲୋକର ପ୍ରଭାବ ରହିଛି । ଯେଉଁ କୋଇଲା ଜାଳି ମାଁ ତୁମ ପାଇଁ କେତେ ପ୍ରକାରର ସ୍ୱାଦିଷ୍ଟ ଖାଦ୍ୟ ତିଆରି କରିଥାଏ, ସେ କୋଇଲା ଭିତରେ ଜଳିବାର ଶକ୍ତି ସଞ୍ଚି ରଖିଲା କିଏ ? ସେଇ ସୂର୍ଯ୍ୟ ତ !

ତୁଷାର କ'ଣ କହିବ ଆସୁଥିଲା । ମା' ହସି ହସି କହିଲେ—'ମୁଁ ଜାଣେ ତୁ କ'ଣ କହିବୁ । କୋଇଲା ଚୁଲିରେ ଏତେ କଷ୍ଟକରି ରାନ୍ଧିକି ରହୁଛ ମା', ଇଲେକ୍ଟ୍ରିକ୍ ହିଟରରେ ରାନ୍ଧୁନ ? ଏଇଆ ତ ?' ମୁଣ୍ଡ ହଲାଇ 'ହଁ' ମାରିଲା ତୁଷାର । ମା' କହିଲେ—'କେବଳ ପାକଘର ପାଇଁ ଶକ୍ତିକୁ ଛାଡ଼ିଦେଲେ, ବାକି ଯେତେ ଉପାୟରେ ଆମେ ଶକ୍ତି ପାଉଥାଉଁ ସବୁ ସୌର ଶକ୍ତିର ରୂପାନ୍ତର ମାତ୍ର । ଆଜିର ଏଇ ଯୁଗକୁ ବିଦ୍ୟୁତ ଶକ୍ତିର ଯୁଗ କୁହାଯାଇ ପାରେ । ସନ୍ଧ୍ୟାହେଲେ ବିଜୁଳୀ ବତୀ, ଗରମ ହେଲେ ପଙ୍ଖା, ଗୀତ ଶୁଣିବାକୁ ରେଡ଼ିଓ, ତା'ଛଡ଼ା ଟେଲିଭିଜନ, ସିନେମା, ରେଫ୍ରିଜରେଟର, କମ୍ପ୍ୟୁଟର ଆଦି ଚଳାଇବାକୁ ଆମେ ବିଦ୍ୟୁତଶକ୍ତି ବ୍ୟବହାର କରିଥାଉଁ । ଏଇ ବିଦ୍ୟୁତ ଶକ୍ତି ଆସେ କେଉଁଠୁ ?' ମାମି ଧୀରେ କରି କହିଲା—'ତାଳଚେର ଥର୍ମାଲ ଷ୍ଟେସନରୁ ।' ମା' କହିଲେ—'ହଁ । କିନ୍ତୁ ସେଠା ତାପଜ ବିଦ୍ୟୁତ କେନ୍ଦ୍ରରେ ଶକ୍ତି ଉତ୍ପାଦନ ପାଇଁ ପଥର କୋଇଲା କିମ୍ବା ଜାଳେଣି ଭାବରେ ବ୍ୟବହୃତ ହୋଇଥାଏ ; ତୁମେ ଜାଣିଛ ଯେ ହୀରାକୁଦରୁ ମଧ୍ୟ ସହରଆଡ଼କୁ ବିଦ୍ୟୁତ୍ ଶକ୍ତି ଯୋଗାଇ ଦିଆଯାଇଥାଏ । ବିଭିନ୍ନ ନଦୀ-ବନ୍ଧ ଯୋଜନାରେ ଜଳକୁ ଆବଦ୍ଧ କରି ସେଥିରୁ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କରାଯାଇଥାଏ । ଏଥିରେ ମଧ୍ୟ ସୂର୍ଯ୍ୟଙ୍କର ପରୋକ୍ଷ ଭୂମିକା ରହିଛି । ଜଳରୁ ଜଳୀୟ ବାଷ୍ପ, ତହିଁରୁ ମେଘମାଳାର ସୃଷ୍ଟି ପାଇଁ ସୂର୍ଯ୍ୟ କିରଣ ଦାୟୀ ନୁହେଁ କି ?'

ତୁଷାର କହିଲା—'ମା', ଦିନେ ସାର୍ କହୁଥିଲେ ଯେ ଆମେ ସାବଧାନ ନ ରହିଲେ ଖୁବ୍ ଶୀଘ୍ର ପୃଥିବୀରେ ଶକ୍ତିର ଅଭାବ ଘଟିବ । ସେଥିପାଇଁ ସତର୍କତା ସ୍ୱରୂପ ବଡ଼ ବଡ଼ ସହରମାନଙ୍କରେ ଦୈନିକ କେତେଘଣ୍ଟା ପାଇଁ ବିଦ୍ୟୁତ୍ ସରବରାହ ବନ୍ଦ ରହୁଛି । ଆମ କଟକରେ ବି ।'

ମା' କହିଲେ—'ତା'ର କାରଣ ଆମେ ଯେତିକି ଶକ୍ତି ଉତ୍ପାଦନ କରୁଛେ ତା'ଠାରୁ ଯଥେଷ୍ଟ ବେଶି ଦିନକୁ ଦିନ ଆମର ଶକ୍ତିର ଚାହିଦା ବଢ଼ି ଚାଲିଛି । ଏଣେ ମାଟିତଳର ସଞ୍ଚିତ କୋଇଲା, ଜାଳେଣି ତେଲ ଓ ବାଷ୍ପ ସବୁ ପ୍ରାୟ ଶେଷ ହେବା ଉପରେ । ତେଣୁ ଶକ୍ତି ପାଇଁ ଅନ୍ୟ

ଚନ୍ତା ନ ଧରଲେ, ଖୁବ୍ ଶୀଘ୍ର ଆମକୁ ପଥର ଯୁଗ ଆଡକୁ ଫେରବାକୁ ପଡ଼ବ । ସତରେ କ'ଣ ଏ ଭୋଗ ବଳାସ, ସହଜ ଜୀବନ ଭୁଲ ଆମେ ପଛକୁ ଫେରପାରବା ? ଅସମ୍ଭବ । ତେଣୁ ଅସରନ୍ତ ଶକ୍ତିର ଭଣ୍ଡାର ସୂର୍ଯ୍ୟ ଆଡ଼କୁ ଆମ୍ଭର ଦରକାର ହୋଇ ପଡ଼ଛନ୍ତ । ତୁମେ ଶୁଣିଲେ ଆଶ୍ଚର୍ଯ୍ୟ ହେବ ଯେ ଗୋଟିଏ ଦନରେ ପୃଥ୍ୱୀ ଉପରେ ଯେତକ ସୂର୍ଯ୍ୟ କରଣ ପଡ଼ଥାଏ, ତାହା ପୃଥ୍ୱୀର ହାବହାର ଶତାବର୍ଷର ଶକ୍ତି ବ୍ରହ୍ମବା ମେଣ୍ଟାଇ ପାରିବ ।'

ମମି ପଚରଲ—'ସୂର୍ଯ୍ୟ ଆଲୋକରୁ ଆମେ ଶକ୍ତି କପର ପାଇ ପାରବା କହଲ ମା' ।' ମା' କହଲେ—'ସେଇ ହେଲ ସମସ୍ୟା । ସୂର୍ଯ୍ୟ କରଣର ପ୍ରଖରତା ଏତେ କମ୍ ଯେ ସିଧାସଳଖ ଭାବରେ ତାହା ଆମର ବଶେଷ କୌଣସି କାମରେ ଲଗପାରବ ନାହିଁ । ସୌର ଶକ୍ତିର ଉପଯୁକ୍ତ ବନଯୋଗ ପାଇଁ ପୃଥିବୀର ବହୁ ବଶିଷ୍ଟ ବୈଜ୍ଞାନକ ଗବେଷଣାରତ । ବହୁ ପୂର୍ବକାଳରୁ ସୂର୍ଯ୍ୟ କରଣକୁ ଗୋଟିଏ ବନ୍ଦୁରେ ଏକତ୍ରୀତ କର ଅତ୍ୟଧିକ ତାପ ଉତ୍ପାଦନର ପଦ୍ଧତି ଲୋକଙ୍କୁ ଜଣାଥିଲ । ଖ୍ରୀଷ୍ଟପୂର୍ବ ୨୧୨ ମସିହାରେ ସୁନାମଧନ୍ୟ ବୈଜ୍ଞାନକ ଆର୍କିମିଡ଼ସ୍ ଶହ ଶହ ଦର୍ପଣରୁ ପ୍ରତିଫଳତ ସୂର୍ଯ୍ୟରଶ୍ମୀକୁ ଏକତ୍ରୀତ କର ବହୁଦୂରରେ ଥିବା ଶତ୍ରୁ ପକ୍ଷର ଯୁଦ୍ଧ ଜାହାଜରେ ନିଆଁ ଲଗାଇ ଦେଇ ପାରଥିଲେ । ୧୮୭୮ ମସିହାରେ ପ୍ୟାରସ୍‌ରେ ସୌରଶକ୍ତି ପରଚ୍ଳତ ଗୋଟିଏ ଛାପାକଳ ପ୍ରଦର୍ଶିତ ହୋଇଥିଲ । ବଜ୍ଞାନ ଉନ୍ନତ ପରେ ଏଭଳ ଆହୁର ଅନେକ ଦୃଷ୍ଟାନ୍ତ ରହଛି । ଏବେ ଆମେରକା, ଜାପାନ, ଅଷ୍ଟ୍ରେଲଆ ଆଦ ଅନେକ ଦେଶରେ ସୌର ଶକ୍ତିର ଅନୁରୂପ ଆହରଣର ଚେଷ୍ଟା ଚାଲଛି । ଆମେରକା 'ସାଣ୍ଡିଆ ସୌରଶକ୍ତି ଗବେଷଣାଗାର'ରେ ସମତଳ ଫଳକ ସଂଗ୍ରାହକ ସାହାଯ୍ୟରେ ସୂର୍ଯ୍ୟ ଆଲୋକକୁ ସଂଗ୍ରହ କର, ତାକୁ ଜାଣେଣି ଭାବରେ ବ୍ୟବହାର କର ବଦ୍ୟୁତ୍ ଶକ୍ତି ଉତ୍ପାଦନ କରଯାଉଛି । ଏହ ପଦ୍ଧତିରେ ଅନ୍ୟାନ୍ୟ ଦେଶମାନଙ୍କରେ ମଧ୍ୟ ବଦ୍ୟୁତ୍ ଶକ୍ତି ଉତ୍ପନ୍ନ କରଗଲଣି । ବଗତ ଦଶ ବାଇବର୍ଷ ଧର ଅଷ୍ଟ୍ରେଲଆ, ଇଜ୍‌ରାଇଲ, ଜାପାନ ଆଦ ଦେଶରେ ସଂଗୃହୀତ ସୌର ଶକ୍ତି ସାହାଯ୍ୟରେ ବାୟୁ ଓ ଜଳକୁ ଗରମ କରଯାଉଛି । ଅନେକ ଶୀତ ପ୍ରଧାନ ଦେଶରେ ଗୃହଗୁଡକୁ ଶୀତତାପ ନୟନ୍ତ୍ରିତ କରିବାରେ ମଧ୍ୟ ଏହ ଶକ୍ତି

ବ୍ୟବହୃତ ହେଉଛି । ଶକ୍ତି ପିପାସୁ ସଭ୍ୟତାକୁ ବଞ୍ଚାଇବାକୁ କେଉଁଠି 'ସୌରକୁଣ୍ଡ'ର ପରିକଳ୍ପନା କରାଯାଉଛି ତ କେଉଁଠି 'ଶକ୍ତିବନ'ର ଯୋଜନା, ପୁଣି କେଉଁଠି 'ସୌର ଗାଲାକ୍ସି' ସୃଷ୍ଟିର ସ୍ୱପ୍ନ । ସାରା ପୃଥିବୀ ଆଜି ହାତପାତି ଭିକ୍ଷା କରୁଛି—ହେ ସୂର୍ଯ୍ୟ, ଶକ୍ତି ଦିଅ ।'

ତୁଷାର କହିଲା—'ମା', ଆମ ଦେଶ ଗୋଟିଏ ଗ୍ରୀଷ୍ମ ପ୍ରଧାନ ଦେଶ । ବର୍ଷର ଦଶମାସରୁ ଅଧିକ ଆମେ ପ୍ରଚୁର ସୂର୍ଯ୍ୟକିରଣ ପାଉ-ଥାଉ । ଏଇ ସୂର୍ଯ୍ୟ ଆଲୋକର ଉପଯୁକ୍ତ ବିନିଯୋଗ ପାଇଁ ଆମ ଦେଶରେ କିଛି ଯୋଜନା କରାଯାଇଛି କି ?' ପ୍ରଶ୍ନଟି ମା'ଙ୍କ ମନକୁ ଖୁବ୍ ପାଇଲା—'ଭଲ ପ୍ରଶ୍ନଟିଏ କଲୁ ବାପା । ପୃଥିବୀର ସବୁ କ୍ଷେତ୍ରରେ ଆମ ଦେଶ ଅନ୍ୟାନ୍ୟ ଦେଶମାନଙ୍କ ସହିତ ତାଳ ଦେଇ ଚାଲିଛି ଯେତେ-ବେଳେ, ଏ କ୍ଷେତ୍ରରେ ପଛେଇ ଯିବ କେମିତି ? ଆମ ଦେଶର ତାମିଲନାଡୁ, ହାଇଦରାବାଦ, ଗୁଜୁରାଟ, ରାଜସ୍ଥାନ, ଦିଲ୍ଲୀ, ହରଦ୍ୱାର ଆଦି ବହୁ ସ୍ଥାନରେ ସୌରଶକ୍ତି ସମ୍ବନ୍ଧୀୟ ଗବେଷଣା ଚାଲୁ ରହିଛି । ସୂର୍ଯ୍ୟାଲୋକ ସଂଗ୍ରହ କରି ତା' ସାହାଯ୍ୟରେ ଜଳ ଓ ବାୟୁକୁ ଗରମ କରିବା, ବରଫ ତିଆରି କରିବା, ଖାଦ୍ୟଶସ୍ୟ ଓ ଅନ୍ୟ ରସାୟନିକ ପଦାର୍ଥରୁ ଜଳୀୟବାଷ୍ପ ନିଷ୍କାସନ କରିବା, ଲୁଣି ଜଳକୁ ମଧୁର ଜଳରେ ପରିଣତ କରିବା, ବିଦ୍ୟୁତ୍ ଶକ୍ତି ଉତ୍ପନ୍ନ କରିବା, 'ସୂର୍ଯ୍ୟଚୁଲି' ସାହାଯ୍ୟରେ ରୋଷେଇ କରିବା ଆଦି ଅନେକ କାର୍ଯ୍ୟ କରିବାକୁ ଆମ ବୈଜ୍ଞାନିକମାନେ ସକ୍ଷମ ହୋଇଛନ୍ତି । ପରୀକ୍ଷାମୂଳକ ଭାବରେ ଗୁଜୁ-ରାଟରେ ଗୋଟିଏ 'ଶକ୍ତିବନ'ର ମଧ୍ୟ ସୃଷ୍ଟି କରାଯାଇଛି । 'ଶକ୍ତିବନ' କ'ଣ ମା ? ପଚାରିଲା ମାମି । ମା' କହିଲେ—'ସୂର୍ଯ୍ୟାଲୋକ ପାଇ ଖୁବ୍ ଶୀଘ୍ର ବଢ଼ିପାରୁଥିବା ଗଛ ଗୁଡ଼ିକୁ ନେଇ 'ଶକ୍ତିବନ' ସୃଷ୍ଟି କରା-ଯାଇଥାଏ । ଗୁଜୁରାଟର କୃଷି ବିଦ୍ୟାଳୟ ତରଫରୁ ପ୍ରାୟ ୪୦୦ ହେକ୍ଟର ଜମିରେ ଏପରି ଗଛସବୁ ଲଗାଯାଇଛି । ମାତ୍ର ଚାରିବର୍ଷ ଭିତରେ ଏ ଜଙ୍ଗଲରୁ ଏତେ ଜାଳେଣି କାଠ ମିଳିବ ଯେ ସେଥିରେ ଗୋଟିଏ ପାଞ୍ଚ ମେଗାୱାଟ ଶକ୍ତି—ଉତ୍ପାଦକ ଯନ୍ତ୍ର ପରିଚାଳିତ ହୋଇ ପାରିବ ।

ତୃଷାର ପଚାରିଲା—'ମା' ସୂର୍ଯ୍ୟଚୁଲ୍ଲୀ କ'ଣ କିଣିବାକୁ ମିଳୁଛି ? କାହିଁ, ଆମ ବଜାରରେ ତ ଗୋଟିଏ ବି ଦେଖୁ ନାହିଁ ।'

ମା' କହିଲେ—'ଏଠି ସିନା ମିଳୁନି, କେତେକ ବଡ଼ ବଡ଼ ସହରରେ କିଣିବାକୁ ମିଳୁଛି । ହେଲେ ଏ ଗୁଡ଼ିକ ବିଶେଷ ଲୋକପ୍ରିୟ ହୋଇପାରୁନି । ଦାମ୍ ଦୃଷ୍ଟିରୁ ଏଗୁଡ଼ିକ ଦୁର୍ଲଭ ନୁହେଁ । ମାତ୍ର ରୋଷେଇ ପାଇଁ ଅଧିକ ସମୟ ଲାଗୁଥିବାରୁ ଓ ସୂର୍ଯ୍ୟକିରଣର ପ୍ରଖରତା ଉପରେ ମୋଟାମୋଟି ଭାବରେ ନିର୍ଭର କରୁଥିବାରୁ ଲୋକେ ସୂର୍ଯ୍ୟଚୁଲ୍ଲୀ ବ୍ୟବହାର ପାଇଁ ବିଶେଷ ଆଗ୍ରହୀ ନୁହନ୍ତି । ପୁଣି ଆମ ଦେଶରେ ଯେଉଁ ରୁଟି ତିଅଣ, ନାନା ଭଜାର ପ୍ରଚଳନ, ସେ ସବୁ ରାନ୍ଧିବାକୁ ସୂର୍ଯ୍ୟଚୁଲ୍ଲୀ ମୋଟେ ଉପଯୁକ୍ତ ନୁହେଁ । ମେଘୁଆ ପାଗରେ ଓ ରାତିରେ ଏ ଚୁଲ୍ଲୀ ମଧ୍ୟ ବ୍ୟବହାର କରିଯାଇ ପାରିବନାହିଁ । ଏତେ ସବୁ ଅସୁବିଧା ସତ୍ତ୍ୱେ ବି ଦିନେ ଆମକୁ ରୋଷେଇପାଇଁ ଏହି ସୂର୍ଯ୍ୟଚୁଲ୍ଲୀ ଉପରେ ନିର୍ଭର କରିବାକୁ ପଡ଼ିବ, ଏଥିରେ ସନ୍ଦେହ ନାହିଁ ।'

ମାମି କହିଲା—'ମା' ସେତେବେଳେ ଆମେ ରାତିରେ କ'ଣ ଖାଇବା ? ପୁଣି ବର୍ଷାଦିନେ ଯେଉଁ ଦିନ ରାତି ବର୍ଷା ଆଉ ମେଘୁଆ ପାଗ, ସେତେବେଳେ କ'ଣ କରିବା ?' ମା' କହିଲେ—'ସେ ଚିନ୍ତା ମଧ୍ୟ କରିଯାଉଛି । ସୌର ଶକ୍ତିକୁ ସଞ୍ଚୟ କରି ରଖି ଦରକାର ବେଳେ ବ୍ୟବହାର କରିବାର ଉପାୟମାନ ବାହାରିଲାଣି । ସେଥିରେ ଅସୁବିଧା ନାହିଁ । ଅସଲ ଅସୁବିଧା ହେଉଛି—' 'କ'ଣ ମା'? ଅତି ଆଗ୍ରହରେ ପଚାରିଲା ତୃଷାର । ମା' କହିଲେ—''ଯେତେ ଯେତେ ଉପାୟରେ ସୌରଶକ୍ତି ସଂଗ୍ରହର ଚେଷ୍ଟା ଚାଲିଛି, ସେଥିରୁ ମିଳୁଥିବା ଶକ୍ତିର ପରିମାଣ ସମୁଦ୍ରକୁ ଶଙ୍ଖେ ପାଣି ଭଳି । ବୈଜ୍ଞାନିକମାନେ ଯଦି ଅଳ୍ପ ଖର୍ଚ୍ଚରେ ସୌର କୋଷ ତିଆରି କରି ପାରନ୍ତେ, ତେବେ ଆମର ଶକ୍ତି ସମସ୍ୟା ରହନ୍ତା ନାହିଁ ।'

ମାମି ପଚାରିଲା—'ଏ ସୌର କୋଷ ପୁଣି କ'ଣ ?'

ମା କହିଲେ—'ଏଗୁଡ଼ିକ ସିଲିକନ୍ ବା ଗାଲିୟମ୍ ଆର୍ସେ-ନାଇଡ୍ ଫଟିକରୁ ତିଆରି ଗୋଟିଏ ଗୋଟିଏ କୋଷ, ଯାହା ଉପରେ

ଆଲୋକ ପଡ଼ିଲେ ସିଧା ସଳଖ ବିଦ୍ୟୁତ ଶକ୍ତିରେ ରୂପାନ୍ତରିତ ହୋଇଥାଏ । କୃତ୍ରିମ ଗ୍ରହ ଉପଗ୍ରହ ଗୁଡ଼ିକରେ ସୌରକୋଷ ବହୁଳ ଭାବରେ ବ୍ୟବହୃତ ହେଉଛି । କିନ୍ତୁ ଏଗୁଡ଼ିକର ଦାମ୍ ଏତେ ବେଶି ଯେ ସାଧାରଣ ବ୍ୟବହାର ସମ୍ଭବପର ହେଉନାହିଁ । ଏକ କିଲୋଓ୍ୱାଟ୍ ବିଦ୍ୟୁତ୍ ଶକ୍ତି ଉତ୍ପନ୍ନ କରିପାରୁଥିବା ଗୋଟିଏ ସୌରକୋଷର ଦାମ୍ ୨୦୦୦ରୁ ୫୦୦୦ ଡଲାର । ଅଳ୍ପ ଖର୍ଚ୍ଚରେ ଅଧିକ କାର୍ଯ୍ୟକ୍ଷମ ସୌର କୋଷର ତିଆରି ନିମନ୍ତେ ବହୁ ସୌରବିଜ୍ଞାନୀ ଅନବରତ ଗବେଷଣା ଚଳାଇଛନ୍ତି । ଏ କୋଷଗୁଡ଼ିକର ବିଶେଷତ୍ୱ ଏହି ଯେ ଥରେ ତିଆରି ହୋଇଗଲେ, ଏହା ବର୍ଷ ବର୍ଷ ଧରି ସୂର୍ଯ୍ୟାଲୋକରୁ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କରି ଚାଲିଥିବ । ପୁଣି ଆକାରରେ ଏଗୁଡ଼ିକ ଏତେ ଛୋଟ ଯେ ଘରର ଛାତ ବା ଝରକାରେ ଖଞ୍ଜିଦେଇ ତହିଁରୁ ଉତ୍ପନ୍ନ ବିଦ୍ୟୁତ୍ ଶକ୍ତି ସାହାଯ୍ୟରେ ଘରର ଯାବତୀୟ ବୈଦ୍ୟୁତିକ ଯନ୍ତ୍ରପାତି ଚଳାଇ ହେବ ।

'କି ମଜା !' ମାମି ଖୁସିରେ ନାଚି ଉଠିଲା । ମା' କହିଲେ, 'ସେ ଦିନ ଆଗ ଆସୁ । କୋଷଗୁଡ଼ିକର ଦାମ ଯଥେଷ୍ଟ କମ୍ ନ ହେଲେ ସାଧାରଣ ଲୋକେ ଏହାକୁ ବ୍ୟବହାର କରିବା ଅସମ୍ଭବ ।'

ତୁଷାର କହିଲା—'ସୌରଶକ୍ତି ପ୍ରଚୁର ଭାବେ ପାଇବା ଯଦି ଏତେ କଷ୍ଟ ଓ ବ୍ୟୟ ସାପେକ୍ଷ, ପାରମାଣବିକ ଶକ୍ତିର ବିନିଯୋଗ କରାଯାଉ ନାହିଁ କାହିଁକି ?'

ମା' କହିଲେ—'ସେ ଦିଗରେ ବି ଚେଷ୍ଟା ଚାଲିଛି । ପାରମାଣବିକ ଶକ୍ତିରୁ ପ୍ରଚୁର ବିଦ୍ୟୁତ୍ ଶକ୍ତି ମିଳିପାରୁଥିବାରୁ ପୃଥିବୀର ଅନେକ ଦେଶରେ, ଆମ ଦେଶରେ ମଧ୍ୟ, ନାଭିକୀୟ ରିଆକ୍ଟର ସାହାଯ୍ୟରେ ଏ ପ୍ରକାର ଶକ୍ତି ଆହରଣର ଚେଷ୍ଟା ଚାଲିଛି । ମାତ୍ର ଏ ଗୁଡ଼ିକ ମଧ୍ୟ କିଛି କମ୍ ଖର୍ଚ୍ଚରେ ପରିଚାଳିତ ହୁଏ ନାହିଁ । ପୁଣି ସାମାନ୍ୟ ଯାନ୍ତ୍ରିକ ତ୍ରୁଟିରେ ଏଥିରୁ ନିର୍ଗତ ତେଜସ୍କ୍ରିୟ ରଶ୍ମି ଚତୁଃପାର୍ଶ୍ୱର ଜୀବ ଓ ଉଦ୍ଭିଦ ଜଗତକୁ ଧ୍ୱଂସ କରି ଦେଇପାରେ । ପାରମାଣବିକ ଜାଳେଣି ଜଳି ସାରିବା ପରେ ଯାହା ବଳକା ରହେ ସେଗୁଡ଼ିକର ତେଜସ୍କ୍ରିୟତା ମଧ୍ୟ ଅତ୍ୟନ୍ତ

ପ୍ରଖର । ସେଗୁଡ଼ିକ ସାଇଣ୍ଡ ମେଖାମିବ କପଡ଼ ଓ କେଉଁଠି ? ସବୁ ଜାଳେଣି ଜଳିଲେ ପରିବେଶକୁ ଦୂଷିତ କରିଥାଏ । ଖାଲି ସୂର୍ଯ୍ୟାଲୋକ ଦୂଷିତ କରିବା ପରିବର୍ତ୍ତେ ପରିବେଶକୁ ନିର୍ମଳ କରିଥାଏ । ତୁମେ ଜାଣିଛ ଯେ ଆମେ ନିଶ୍ୱାସରେ ଅମ୍ଳଜାନ ନେଇ ପ୍ରଶ୍ୱାସରେ ଅଙ୍ଗାର କାମ୍ଳ ଛାଡ଼ି ଥାଆନ୍ତି । ସୂର୍ଯ୍ୟାଲୋକ ସାହାଯ୍ୟରେ ନିଜର ଖାଦ୍ୟ ପ୍ରସ୍ତୁତ କଲା ସମୟରେ ଗଛ ଅଙ୍ଗାରକାମ୍ଳ ଗ୍ରହଣ କରି ଅମ୍ଳଜାନ ତ୍ୟାଗ କରୁ ନ ଥିଲେ ବାୟୁମଣ୍ଡଳରୁ କେବେଠାରୁ ସବୁ ଅମ୍ଳଜାନ ଶେଷ ହୋଇ ସାରନ୍ତାଣି । ଅବଶ୍ୟ ତାର ବହୁପୂର୍ବରୁ ଅଙ୍ଗାରକାମ୍ଳର ପରିମାଣ ବୃଦ୍ଧି ଯୋଗୁ ବାୟୁମଣ୍ଡଳ ଉତ୍ତପ୍ତ ହୋଇ ସବୁ କିଛି ଦଗ୍ଧ କରି ଦିଅନ୍ତା । ତେଣୁ ନିର୍ମଳ ପରିବେଶରେ ନିଜର ସଭ୍ୟତା ବଞ୍ଚାଇବାକୁ ସବୁ ବିକାଶଶୀଳ ରାଷ୍ଟ୍ରର ଚିନ୍ତାନାୟକମାନେ ସୌରଶକ୍ତି ଉପରେ ବିଶେଷ ଗୁରୁତ୍ୱ ଦେଉଛନ୍ତି । ଯେତେଦିନଯାଏ ନିଜେ ଜଳି ସୂର୍ଯ୍ୟ ତା' ଆଲୋକରେ ଆମକୁ ଆଲୋକିତ କରୁଥିବ, ସେତେଦିନଯାଏ ଏ ଉଦ୍ଭିଦ ଜଗତ ବଞ୍ଚିବ, ଆମେ ବଞ୍ଚିରହିବା, ଆଉ ବଞ୍ଚିରହିବ ଆମ ସଭ୍ୟତା । ଏବେ କହ ତୁଷାର, ସୂର୍ଯ୍ୟ ଆମର ପ୍ରାତଃ ନମସ୍ୟ ହେବା କଥା ନା ନାହିଁ ?'

ମାମିର ହାତଧରି ତୁଷାର କହିଲା—'ହଁ ମା, ମୋର ଭୁଲ୍ ମୁଁ ବୁଝିପାରିଛି । ଚାଲ ଏବେ ଆମେ ସମସ୍ତେ ମିଶି ସୂର୍ଯ୍ୟଙ୍କୁ ବନ୍ଦନା କରିବା ।'

ଗଭୀର ତୃପ୍ତ ସହକାରେ ସୁମିତା ଦେବୀ ହାତ ଯୋଡ଼ି ଆରମ୍ଭ କଲେ—

'ନମଃ ସବିତ୍ରେ ଜଗଦେକ ଚକ୍ଷୁଷେ
ଜଗତ୍ ପ୍ରସୂତି ସ୍ଥିତି ନାଶ ହେତବେ,
ତ୍ରୟୀମୟାୟ ତ୍ରିଗୁଣାତ୍ମଧାରିଣେ,
ବିରଞ୍ଚି ନାରାୟଣ ଶଙ୍କରାତ୍ମନେ'

ପାଳ ଧରିଲେ ତୁଷାର ଓ ମାମି ।



# ଗାଇବଂଧ ବାନ୍ଧିବ କାଙ୍କିଣୀ ନଥିଲେ

**ଶ୍ରୀ ପରମାନନ୍ଦ ଅଧିକାରୀ**

ମାଳାଦ୍ରୀ ସେଦିନ ହସି ହସି କହିଲା—'ଗାଇ ବଂଧ ବାନ୍ଧିବ, କାଙ୍କିଣୀ ନଥିଲେ ।' କଳାଶ୍ରୀ ଚମକିପଡ଼ି ପଚାରିଲା—

'କ'ଣ କହିଲ ଆଉ ଥରେ କହିଲ ?'

ମାଳାଦ୍ରୀ ପୁଣି ଟିକିଏ ଚଡ଼ା ଗଳାରେ କହିଲା—

'ତୁମେ ଅବଳା, ଦୁର୍ବଳା ଲୋକ, ସେକଥା ବୁଝିବ କୁଆଡୁ ?'

କ'ଣ ମୁଁ ଅବଳା ?

ଦୁର୍ବଳା ?

ସାର୍ଦ୍ଧ ପଚିଶ ବର୍ଷ କାଳ ପାଠ ପଢ଼ିଲି ଏମ. ଏସ୍. ସି. ପରେ ଡାକ୍ତରୀ ପଢ଼ିଲି ଆମେରିକା ଯାଇ ଗାଇନକ୍‌ରେ— ସ୍ପେସାଲାଇଜନ କଲି । ତୁମେ ଏମିତି କ'ଣ କହୁଛ ଯେ ମୁଁ ବୁଝିପାରିବି ନାହିଁ ।

ବୁଝିଲି କଳାଶ୍ରୀ ସୃଷ୍ଟିର ରହସ୍ୟ ଯେତିକି ବିଚିତ୍ର । ସ୍ରଷ୍ଟାଙ୍କ ସୃଷ୍ଟି ସେତିକି ଅଦ୍ଭୁତ । ବିଶ୍ୱର ରନ୍ଧ୍ରେ ରନ୍ଧ୍ରେ ପ୍ରତି ଧୂଳି କଣାରେ ଭରି ରହିଛି ଏକ ଅଦୃଶ୍ୟ ଶକ୍ତିର ସାର୍ବଭୌମିକତା । ବିଜ୍ଞାନ ଆଜି ଚରମ ସୀମାରେ ଉପନୀତ ହୋଇଗଲାଣି । ମଣିଷ ଏଭରେଷ୍ଟ ଜୟ କରି ସାରିଲାଣି । ଚନ୍ଦ୍ରପୃଷ୍ଠକୁ ଘରରେ ପରିଣତ କଲାଣି । ଟେଷ୍ଟଟ୍ୟୁବ ବେବି ଜନ୍ମ ନେଲାଣି । ଟେଲିଭିଜନ, ରେଡ଼ିଓ ପରେ ପିକ୍‌ଚର ଫୋନ୍ ଉଦ୍ଭାବନ ହେଲାଣି । ମଣିଷର ମୃତ୍ୟୁ ଯେପରି ନହେବ ସେଥିପାଇଁ ପ୍ରବଳ ଉଦ୍ୟମ ଆରମ୍ଭ ହୋଇଛି ।

ମାମୁଁ ଘରକୁ ନୂଆ କୁଣିଆ ପ୍ରତିଦିନ ଯାଉଛନ୍ତି ? ବିଜ୍ଞାନ ଅତି ମଣିଷ ଜୀବନକୁ ଷିନ୍ ଭିନ୍ କରିଦେବାକୁ ବସିଛି ।

କଳାଶ୍ରୀ କହିଲି—ହଁ, ପ୍ରକୃତରେ ବୈଜ୍ଞାନିକ ସତେ ଯେମିତି ଭଗବାନଙ୍କଠାରୁ ବଡ଼ ବୋଲି ଜଣାପଡ଼ିଲେଣି ?

ଗୀତାଦ୍ରୀ ପଚାରିଲି-କଳାଶ୍ରୀ ତୁମେ କହିପାରିବ ? ଭଗବାନ କ'ଣ ଅଲଗା ଶକ୍ତି ? ଆଉ ମଣିଷ ? ତୁମର ପୂର୍ବପୁରୁଷ ଭୂଲିଯାଉଛ । Man is good. God is man.

ଭାଗବତରେ ଅଛି ପଦ,

କର କରାଇଥାଏ ମୁହିଁ

ମୋ'ବିନୁ ଅନ୍ୟ ଗତି ନାହିଁ ।"

ବିଜ୍ଞାନ ।

ଆଉ ବୈଜ୍ଞାନିକ ?

ମଣିଷର ପେଟ ଚିରି ଚିରି ବହୁତ କଥା ମୁଁ ଦେଖିଲିଣି ପେଟ ଅପରେସନ କରିବା ପୂର୍ବରୁ ମୁଁ ହୃଦୟଟ ପ୍ରଥମେ ମୁଣ୍ଡରେ ଲଗାଏ । ବିଶ୍ୱନିୟନ୍ତା, ବିଶ୍ୱ ପିତାଙ୍କୁ ଆତ୍ମ ସମର୍ପଣ କରିଦିଏ ।

ତା' ପରେ —

ହସ୍ତ ଯୋଡ଼ିକ ମୋ'ର ଚଳ ଚଞ୍ଚଳ ହୋଇଉଠେ ।
ମୁଁ ପେଟଟାକୁ ଚିରି ଦେଲା ପରେ । ମନେ ଯେମିତି କୌଣସି ଅଦୃଶ୍ୟ ଶକ୍ତି ମୋ ହାତକୁ ଠିକ୍ ରୋଗ ସ୍ଥାନକୁ ଘେନିଯାଏ ।

ପ୍ରେରଣା ଦିଏ ।

ଅସୀମ ପ୍ରେରଣା ।

ମନ ମଧ୍ୟରେ ଉଚ୍ଚ କହେ—ନିଜର କର୍ତ୍ତବ୍ୟ କରିଯାଅ । ମୁଁ ସଙ୍ଗେ ସଙ୍ଗେ ଅଛି ।

ସାବାସ—

କଷ୍ଟ ଯନ୍ତ୍ରଣା ।

କଷ୍ଟ ଛଟପଟ । ବାନ୍ତି । ଅନାହେଟିଆର ଉତ୍କଟ ଗନ୍ଧ । ସବୁ କୁଆଡ଼େ ଉଭେଇଯାଏ ।

ରୋଗୀ ହୁଏ ରୋଗମୁକ୍ତ ?

କଳାଶ୍ରୀ ପଚାରିଲ—

'ହଇ ହେ ତୁମେ ତ ଏତେ ବଡ଼ ଡାକ୍ତର । ଖଣ୍ଡମଣ୍ଡଳରେ ତୁମ ନାମ ଡାକ । ତୁମେ ଚଢ଼ଗଡ଼ଆ ମହାଦେବ, ଭୁବନେଶ୍ୱର ଲିଙ୍ଗରାଜ ।

ଆଜି—

ପୁରୀର ଶ୍ରୀ ଜଗନ୍ନାଥଙ୍କ ନିକଟରେ ଏତେ ସମୟ ବସି କ'ଣ ଏତେ ଭାବ ?

ମାନାଦ୍ରୀ ଟିକିଏ ମୁରୁକି ହସା ଦିଏ ।

କିଛି ସମୟ ପରେ ନିଜର ପ୍ରିୟତମା ପତ୍ନୀକୁ କହେ—
ଅସଂଖ୍ୟ ଲୋକ ଶତ ଶତ ମୁଁ ସ୍ତମ୍ଭୀଭୂତ ହୋଇଯାଇଛି । ମଣିଷ ଦେହରେ ମଣିଷର ଭିତରକୁ ଯାହା ଦେଖିବାର ତାହା ଦେଖିଛି — ଚର୍ମ ଢାଙ୍କିଛି ଖାଲି ଖଣ୍ଡି ଯେ ଖଣ୍ଡି ପିଞ୍ଜରା କାଠକୁ । ମୁଁ ଠାକୁରଙ୍କୁ ପଚାରେ—

"ତୁମର କେତେ ଶକ୍ତି ସତେ ?'

ବୁଝିଲ କଳାଶ୍ରୀ ମୁଁ ଏବେ ମୁଖ୍ୟମନ୍ତ୍ରୀଙ୍କ ସହିତ ଭିତର କନିକା ଦୁର୍ଗମ ଅଞ୍ଚଳକୁ ଯାଇଥିଲି । ଖରସ୍ରୋତା ନଦୀ କୂଳରେ 'ରାଇ' ବୋଲି ବଡ଼ ବଡ଼ ଗଛ ସବୁ ଅଛି ।

ବର୍ଷାରେ ଯେଉଁ ଗଛରୁ ବଡ଼ ବଡ଼ ଚେରସବୁ ବାହାରି ନଦୀସୁଅକୁ ବନ୍ଦକରି ଦେବାକୁ ଚେଷ୍ଟାକରେ ମାତ୍ର 'କାର୍କିଣୀ' ବୋଲି ଏକ ଛୋଟ ପୋକ ସେହି ଚେରକୁ ସବୁ କାଟି ଦେଇ ନଦୀର ସ୍ରୋତକୁ ସ୍ୱଚ୍ଛନ୍ଦ ଗତିରେ ଯିବାପାଇଁ ସାହାଯ୍ୟ କରେ । ସେଇଥିପାଇଁ ଲୋକମୁଖରେ ସବୁଆଡ଼େ ଶୁଣାଯାଏ, ରାଇ ବନ୍ଧ ବାନ୍ଧିବ 'କାର୍କିଣୀ' ନଥିଲେ ।

ଯେଉଁ କୁମ୍ଭୀର ଜଳରେ ପ୍ରବଳ ପ୍ରତାପୀ, ସେହି କୁମ୍ଭୀର ମଧ୍ୟ କାଙ୍କିଣୀ କ ଡରେ । କାର୍କିଣୀ ଉପରେ ଯଦି ଅଲକ୍ଷରେ ମଣିଷର ପାଦ ପଡ଼ିଯାଏ ତେବେ ସର୍ବନାଶ ହୋଇଯାଏ । ପାଦ ଦୁଇଖଣ୍ଡ ହୋଇଯିବ । ଧନ୍ୟ ଈଶ୍ୱରଙ୍କର ଶକ୍ତି । ଅଖିଳ ବ୍ରହ୍ମାଣ୍ଡପତିଙ୍କର ଅଖଣ୍ଡ ମହିମା । ସେଇଥିପାଇଁ ଶ୍ରେଷ୍ଠ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍ କହିଲେ—Where Science ends there God begins.



# ପେନ୍‌ସିଲ କଳି

## ଅଧ୍ୟାପିକା ମନୋରମା ମହାପାତ୍ର

ସୁଷମା କଲେଜରେ ପଢେ । ପୂଜାଛୁଟିରେ ଘରକୁ ଆସିଥାଏ । ନାନୀକୁ ପାଇ ମିନୁ, ନନ୍ଦ, ଟୁକୁ ବାବୁଙ୍କର ଖୁସି ଦେଖେ କିଏ ? ଗଳ୍ପ କହି କହି ବେଦମ ହେଲାଣି ସୁଷମା । ରବିବାର ଦ’ ପ୍ରହରବେଳେ ଟିକିଏ ମ୍ୟାଗାଜିନ୍ ପଢ଼ିବ ଭାବି ସବୁ ଭାଇ ଭଉଣୀଙ୍କୁ କାମରେ ଲଗାଇ-ଦେଲା । ସମସ୍ତଙ୍କର ଗୋଟିଏ ଲେଖା ପେନ୍‌ସିଲ, ଖଣ୍ଡେ ରବର ଓ ଖଣ୍ଡେ କାଗଜ । ‘ମନଦେଇ ଛବି ଆଙ୍କ; ଯାହାର ଛବି ସୁନ୍ଦର ହେବ ସେ ପାଇବ ଗୋଟିଏ ଦାମୀ ଚକୋଲେଟ୍ ।’

ଛବି ଆଙ୍କିବାର ଦଶମିନଟ୍ ନହେଉଣୁ ମିନୁ ଓ ଟୁକୁ ଆସିଲେ । ମାମଲା ବୁଝିବାକୁ ପଡ଼ିବ । ମିନୁ କହିଲା —‘ପେନ୍‌ସିଲ ଓ ରବର ଓଡ଼ିଆ କଥା ନୁହେଁ ନାନୀ ? ଟୁକୁଭାଇ ମନା କରୁଛି ।’ ଟୁକୁ ୭ମ ଶ୍ରେଣୀରେ ପଢ଼ୁଛି । ଇଂରାଜୀରେ ତାର ଭଲଜ୍ଞାନ । ଗର୍ବରେ ଛାତି ଫୁଲାଇ କହିଲା; ‘ଦେଖିଲ୍ ନାନୀ, ମିନୁ କେଡେ ବୋକା… ……ନାଗ ପେନ୍‌ସିଲ୍‌ମାନେ ସୀସା ପେନ୍‌ସିଲ ନୁହେଁ ? ପେନ୍‌ସିଲ ଓ ରବର ଇଂରାଜୀ ଶବ୍ଦ ନୁହେଁ ?’ ସଙ୍ଗେ ସଙ୍ଗେ ବନାନ କରି ଦେଇ ସେ ନିଜ ଜ୍ଞାନର ପ୍ରମାଣ ଦେଖାଇ ଦେଲା ।

ସୁଷମା ପଢ଼ା ବହିଟି ଥୋଇଦେଇ ସିଧା ହୋଇ ବସିଲା । କହିଲା, ‘ହଁ, ଇଂରାଜୀ ଶବ୍ଦ ! ଓଡ଼ିଆରେ ଆମେ ଚଳେଇ ନେଉଥାଉ’ ସଙ୍ଗେ ସଙ୍ଗେ ସାନ ଭଉଣୀର ମୁହଁ ଶୁଖିଲା ଦେଖି ସେ ଟୁକୁକୁ ପଚାରିଲା—‘ଆଚ୍ଛା କହିଲୁ ତୋ ପେନ୍‌ସିଲର ସୀସା କାହିଁରେ ଓ କେବେ ତିଆରି ହୋଇଛି ।’ ‘ତୋ ରବର କାହିଁରେ ତିଆରି ?’ ଟୁକୁର ମୁହଁ ଶୁଖିଲା । ରବର ତ ଏକ ଗଛରୁ ତିଆରି କିନ୍ତୁ ସୀସା ?

ସଙ୍ଗେ ସଙ୍ଗେ ନନ୍ଦ, ବାବୁଲ, ମିନ ସମସ୍ତେ ସୁରମାଙ୍କୁ ଘେରି ବସିଲେ ।
‘ସେ କଥା କହ ନାନୀ !’

ସୁରମା କହିଲା ‘ପେନ୍‌ସିଲର ସୀସାଟା ଗ୍ରାଫାଇଟ୍‌ରେ ତିଆରି । ମେଣ୍ଟା ହେଲା କାଗଜ । ଗ୍ରୀକ୍‌ରେ ଗ୍ରାଫିଆ ଶବ୍ଦର ଅର୍ଥ ଲେଖା । ତେଣୁ ଯେଉଁ କାଗଜରେ ଲେଖା ହେଲା ତା’ ନାଆଁ ଦେଲେ ଗ୍ରାଫାଇଟ୍ । ସେହିପରି ଇଂରାଜୀରେ ରବ୍ ଶବ୍ଦର ଅର୍ଥ ଲିଭାଇବା । ତେଣୁ ଯେଉଁଥିରେ ପେନ୍‌ସିଲ ଦାଗ ଲିଭିଗଲା ତା’ ନା ଦେଲେ ରବର ।

ଟୁକୁ ପଚାରିଲେ ‘ଗ୍ରାଫାଇଟ୍ କ’ଣ ପେନ୍‌ସିଲ ତିଆରି କାମରେ ଲାଗେ ? ସୁରମା କହିଲା, ଶୁଣ—ଗ୍ରାଫାଇଟ ଆବିଷ୍କାର ଆଗରୁ ଗ୍ରୀକ୍ ଓ ରୋମାନମାନେ ସୀସାରେ ଲେଖାଲେଖି କରୁଥିଲେ । ତାଙ୍କ ଭାଷାର ଅର୍ଥ ଅନୁସାରେ ତାକୁ ଗ୍ରାଫାଇଟ୍ କହୁଥିଲେ । ମାତ୍ର ୧୬୦୦ ଶତାବ୍ଦୀରେ ଗ୍ରାଫାଇଟ୍ ଆବିଷ୍କାର ହେଲା । ତା’ପରେ ଲେଖାଲେଖି ଛବି ଅଙ୍କା କାମରେ ବ୍ୟବହୃତ ହେଲା । ତା’ର ପ୍ରାୟ ୧୫୦ ବର୍ଷ ପରେ ଇଂଲଣ୍ଡର କୁମେରେଲଣ୍ଡ ନାମକ ସ୍ଥାନରେ ଭୟଙ୍କର ତୋଫାନ ହୋଇ ଗୋଟାଏ ପ୍ରକାଣ୍ଡ ଗଛ ଉପୁଡ଼ି ପଡ଼ିଲା । ଭୂମିରେ ଭାରି ବଡ଼ ଗାତଟାଏ ହୋଇଗଲା । ହଠାତ୍ ତା’ ଭିତରୁ କଳା କଳା କାଦୁଅ ପରି ଖଣ୍ଡି ଗ୍ରାଫାଇଟ୍ ମିଳିଲା । କୁମେରେଲଣ୍ଡର ମେଷ ପାଳକମାନେ ସେଥିରୁ ଖଣ୍ଡେ ଖଣ୍ଡେ ନେଇ ମେଣ୍ଢା ଦେହରେ ଦାଗ ଚିହ୍ନଟ କଲେ । ସେହିପରି ଭାବରେ ଇଂଲଣ୍ଡରେ ଗ୍ରାଫାଇଟ୍ ଆବିଷ୍କାର ହେଲା ।

‘ନେପୋଲିୟନ ବୋନାପାର୍ଟ’ ଯେତେବେଳେ ଶୁଣିଲେ ଯେ ଇଂଲଣ୍ଡର ଲୋକେ ଗ୍ରାଫାଇଟ୍‌ରେ ଛବି ଆଙ୍କୁଛନ୍ତି ଓ ଲେଖୁଛନ୍ତି ସେତେବେଳେ ସେ ଭାରି ବ୍ୟସ୍ତ ହୋଇ ପଡ଼ିଲେ । ମାତ୍ର ଇଂଲଣ୍ଡ ସରକାର ଗ୍ରାଫାଇଟ୍ ରପ୍ତାନି ବନ୍ଦ କରି ଦେଇଛନ୍ତି । ବହୁ କଷ୍ଟରେ ଫ୍ରାନ୍ସରେ ନିକୃଷ୍ଟ ଧରଣର ଗ୍ରାଫାଇଟ୍ ମିଳିଲା । ମାତ୍ର ସେଥିରେ ଭଲ ଲେଖା ହେଲାନାହିଁ । ତେଣୁ ସେ ନିକୋଲାସ କୋନ୍ତେ ନାମକ ଜଣେ ବୈଜ୍ଞାନିକଙ୍କୁ ଗବେଷଣା କରିବା କାର୍ଯ୍ୟରେ ଲଗାଇଲେ । ଏହି

ନକୃଷ୍ଟ ଗ୍ରାଫାଇଟ୍‌ରୁ କପର ଉତ୍କୃଷ୍ଟ ଲେଖା ହୋଇ ପାରିବ ସେଥି-ପାଇଁ ସେ ପ୍ରାଣପଣେ ଲାଗିପଡ଼ିଲେ । ୧୭୯୫ରେ ସେ ଯାହା ପ୍ରସ୍ତୁତ କଲେ ସେଥିରେ ଭଲ ଲେଖି ହେଲା । ଠିକ୍ ସେତିକବେଳେ ଜର୍ମାନୀରେ କାସ୍ପାରଫାବେର ନାମକ ଜଣେ ବୈଜ୍ଞାନିକ ଗ୍ରାଫାଇଟ୍ ଗୁଣ୍ଡ ସଙ୍ଗେ ଗନ୍ଧକ, ଆଣ୍ଟିମନି ଓ ରଞ୍ଜନ ନାମକ ଧାତୁ ମିଶାଇ ତାକୁ ସରୁ ସରୁ ବାଡ଼ି ଆକାରରେ ଶୁଖାଇଲେ । ପୁଣି କାଠ ଖୋଳରେ ପୂରାଇ ପୂରାପୂରି ପେନ୍‌ସିଲ ତିଆରି କଲେ । ପ୍ରଥମ ତିଆରି କରି ବାହାଦୁରୀଟା ତାଙ୍କର ହେଲ ଦେଖି, ଆମେରିକା ୧୮୧୨ରେ ପେନ୍‌ସିଲ ତିଆରି କଲା । ୱିଲିୟମ୍ ନାମକ ଜଣେ ବଢ଼େଇ ଏହା ବାହାର କଲେ । ସାଧାରଣତଃ ପେନ୍‌ସିଲ ଲମ୍ବା ହେଲ ୭ ଇଞ୍ଚ । ତା'ର ମୂନରେ ଯଦି ଲମ୍ବା ଗାର ଟଣାଯାଏ ତେବେ ତାହା ୩୭ମାଇଲ୍ ଲମ୍ବ ହେବ ବୋଲି ସ୍ଥିର କରାଯାଇଛି । ଶବ୍ଦ ଲେଖାଗଲେ ୩୭ ହଜାର ଶବ୍ଦ ଲେଖା ହେବ ।

ମିନ, ବାବୁଲା ପ୍ରଭୃତି ଆଁ କରି ଶୁଣୁଥିଲେ । କହିଲେ, 'ନାନୀ, ଏତେ କଥାକୁ ଆଉ ଜାଣିଲୁ ?' ସେମାନଙ୍କୁ କୋଳକରି ହସି ହସି ସୁରମା କହିଲ—ବହିପଢ଼ି ଜାଣିଛି । ତୁମ୍ଭେମାନେ ପାଠ ପଢ଼ିଲେ ଦୁନିଆର କେତେ କଥା ଜାଣିବ । ହଉ, ଏବେତ ଶୁଣିଲ, ଯାଅ ତୁମ କାମ କର । ଟୁକୁ କହିଲ, 'ନାଇଁ ନାନୀ ଉବର କଥା କହିଲୁ ନାହିଁତ ?'

'କହ'—ସମସ୍ତେ ଏକାସଙ୍ଗେ କହିଉଠିଲେ···'କହ ନାନୀ' । ରୋଷାଇଘରୁ ବୋଉ ଡ଼ାକଲେ······ସୁରମା······ଆସ ମୋତେ ଟିକଏ ରାନ୍ଧିବାରେ ସାହାଯ୍ୟ କରିବୁ । 'ଆଜି ଏତିକ ଥାଉ—ବୋଉ ଡ଼ାକୁଛି । କାମ ଅଛି, କାଲି କହିବି ।'



# ବ୍ଲାକ୍ ହୋଲ୍

**ଅଧ୍ୟାପକ ଦେବକାନ୍ତ ମିଶ୍ର**

ତୁମେ ନିଶ୍ଚୟ ଆକାଶ ଆଡ଼କୁ ଢେଲା ପକାଇଥିବ । ଢେଲାଟିକୁ ଯେତେ ଜୋରରେ ଉପରକୁ ଫୋପାଡ଼ିଲେ ମଧ୍ୟ ତାହା ତଳକୁ ଖସି ପଡ଼ୁଛି କାହିଁକି ? ଏପରି ପ୍ରଶ୍ନ ତୁମ ମନରେ ନିଶ୍ଚୟ କୌତୁହଳ ସୃଷ୍ଟି କରୁଥିବ । ବୈଜ୍ଞାନିକମାନେ ଏପରି ପ୍ରଶ୍ନର ଯଥାର୍ଥ ଉତ୍ତର ଯୋଗାଇ ଦେଇଛନ୍ତି । ସେମାନଙ୍କ ମତାନୁଯାୟୀ ଯେ କୌଣସି ଦୁଇଟି ବସ୍ତୁ ମହାକର୍ଷଣ ବଳ ଯୋଗୁଁ ପରସ୍ପର ଆଡ଼କୁ ଆକର୍ଷିତ ହୁଅନ୍ତି । ଆମ ଅତି ଆପଣାର ବାସସ୍ଥଳୀ ପୃଥିବୀ ନାମକ ବସ୍ତୁ ପିଣ୍ଡଟି ଗୋଟିଏ ବସ୍ତୁକୁ ନିଜ କେନ୍ଦ୍ର ଆଡ଼କୁ ଟାଣି ଆଣିବା ପାଇଁ ଯେଉଁ ବଳ ପ୍ରୟୋଗ କରେ, ତାହାକୁ ସ୍ୱତନ୍ତ୍ର ଭାବରେ ପୃଥିବୀର ମାଧ୍ୟାକର୍ଷଣ ବଳ କୁହାଯାଏ । ଆମେ ଯେତେ ଅଧିକ ବଳ ପ୍ରୟୋଗ କରି ଉପରକୁ ଢେଲା ଫୋପାଡ଼ିଲେ ମଧ୍ୟ ନିମ୍ନମୁଖୀ ମାଧ୍ୟାକର୍ଷଣ ବଳର ନିରବଚ୍ଛିନ୍ନ ପ୍ରଭାବ ଯୋଗୁଁ ଊର୍ଦ୍ଧ୍ୱଗାମୀ ଢେଲାଟିର ଗତି ମନ୍ଥର ହୋଇଯାଏ ଏବଂ ଶେଷକୁ ସମସ୍ତ ଗତିଜ ଶକ୍ତି ଶେଷ ହୋଇଯିବା ପରେ ମାଧ୍ୟାକର୍ଷଣ ବଳ କବଳିତ ହୋଇ ଢେଲାଟି ଭୂପୃଷ୍ଠଗାମୀ ହୁଏ । ମାତ୍ର ଆମେ ଯଦି କୌଣସି ପ୍ରକାରେ ଢେଲାଟିକୁ ଏପରି ଦ୍ରୁତ ବେଗରେ ଊର୍ଦ୍ଧ୍ୱଗାମୀ କରାଇ ପାରିବା ଯେ ତାହା ସହିତ ସଂଶ୍ଲିଷ୍ଟ ଗତିଜ ଶକ୍ତି ମାଧ୍ୟାକର୍ଷଣ ବଳର ପ୍ରଭାବ ଯୋଗୁଁ ଦୁର୍ବଳ ହୋଇଯିବା ପୂର୍ବରୁ ଢେଲାଟି ପୃଥିବୀଠାରୁ ଏତେ ଦୂରକୁ ଚାଲିଯିବ, ଯେଉଁଠିକି ପୃଥିବୀର ମାଧ୍ୟାକର୍ଷଣବଳ ତାହାକୁ ଆଉ ନିଜ ଆଡ଼କୁ ଟାଣି ପାରିବ ନାହିଁ, ତାହାହେଲେ ଢେଲାଟି ଆଉ କାହିଁକି ତଳକୁ ଖସି ପଡ଼ିବ ?

ପ୍ରାତଃସ୍ମରଣୀୟ ବୈଜ୍ଞାନିକ ସାର୍ ଅଇଜାକ୍ ନିଉଟନ କହାଇ ଦେଇଛନ୍ତି ଯେ ଦୁଇଟି ବସ୍ତୁ ମଧ୍ୟରେ କାର୍ଯ୍ୟକାରୀ ହେଉଥିବା ମହାକର୍ଷଣ ବଳର ପରିମାଣ ସେହି ଦୁଇଟି ବସ୍ତୁର ବସ୍ତୁତ୍ୱର ଗୁଣଫଳ ସହିତ ସମାନୁପାତୀ ହୁଏ ଏବଂ ବସ୍ତୁ ଦୁଇଟି ମଧ୍ୟରେ ଦୂରତାର ମୂଲ୍ୟ ଯେତେ ଅଧିକ ହୁଏ ମଧ୍ୟାକର୍ଷଣ ବଳର ମୂଲ୍ୟ ସେହି ଦୂରତାର ବର୍ଗ ଅନୁପାତରେ କମି କମି ଯାଏ । ଦୂରତାନୁକ୍ରମରେ ମାଧ୍ୟାକର୍ଷଣ ବଳରେ ଘଟୁଥିବା ଏପରି ହ୍ରାସକୁ ତଥା ପୃଥିବୀର ବସ୍ତୁତ୍ୱକୁ ବିଚାରକୁ ନେଇ ବୈଜ୍ଞାନିକମାନେ କହାଇଦେଇଛନ୍ତି ଯେ ଗୋଟିଏ ବସ୍ତୁକୁ ଯଦି ସେକେଣ୍ଡ ପ୍ରତି ପ୍ରାୟ ୭ ମାଇଲ ବେଗରେ ଊର୍ଦ୍ଧ୍ୱଗାମୀ କରାଯାଏ, ତାହାହେଲେ ପୃଥିବୀର ମାଧ୍ୟାକର୍ଷଣ ବଳକୁ ଅତିକ୍ରମ କରି ସେହି ବସ୍ତୁଟି ଉପରକୁ ଚାଲିଯିବ ଏବଂ ଏହା ଆଉ ତଳକୁ ଖସିବାର ସମ୍ଭାବନା ରହିବ ନାହିଁ । ଆମେ ଶାରୀରିକ ବଳ ପ୍ରୟୋଗକରି ଗୋଟିଏ ବସ୍ତୁକୁ ଏତେ ଅଧିକ ଦ୍ରୁତଗାମୀ କରାଇବା କେବେହେଲେ ସମ୍ଭବ ନୁହେଁ । ମାତ୍ର ମନୁଷ୍ୟ ବୁଦ୍ଧି ଖଟାଇ ରକେଟ୍ ଗୁଡ଼ିକ ଜରିଆରେ ମହାକାଶଯାନଗୁଡ଼ିକୁ ବର୍ତ୍ତମାନ ଏପରି ଦ୍ରୁତ ବେଗରେ ଊର୍ଦ୍ଧ୍ୱଗାମୀ କରାଇ ପାରୁଥିବାରୁ ପୃଥିବୀର ମାଧ୍ୟାକର୍ଷଣ ବଳ କବଳରୁ ମୁକ୍ତ ହୋଇ ସେଗୁଡ଼ିକ ମହାକାଶରେ ପର୍ଯ୍ୟଟନ କରି ପାରୁଛନ୍ତି ।

କୌଣସି ଗୋଟିଏ ବସ୍ତୁପିଣ୍ଡର ମହାକର୍ଷଣ ବଳ କବଳରୁ ଗୋଟିଏ ବସ୍ତୁକୁ ମୁକ୍ତ କରିବା ପାଇଁ କମ୍‌ରେ ତାକୁ ଯେତିକି ବେଗରେ ବେଗଗାମୀ କରାଯିବା ଆବଶ୍ୟକ ହୁଏ, ତାହାକୁ ସେହି ବସ୍ତୁପିଣ୍ଡଟିର ପଳାୟନ-ବେଗ ବା ଏସକେପ୍ ଭେଲୋସିଟି କୁହାଯାଏ । ଆମେ ଜାଣୁ ଯେ ବୃହସ୍ପତି ଗ୍ରହଟି ସୌର ପରିବାରର ବୃହତ୍ତମ ଗ୍ରହ । ଏହି ଗ୍ରହର ମହାକର୍ଷଣ ବଳ କବଳରୁ ମୁକ୍ତି ଲାଭ କରି ପଦାକୁ ଚାଲି ଆସିବା ପାଇଁ ଗୋଟିଏ ବସ୍ତୁର ପଳାୟନ-ବେଗ ସେକେଣ୍ଡ ପ୍ରତି ପ୍ରାୟ ୩୭୦୬ ମାଇଲ ହେବା ଦରକାର । ସୂର୍ଯ୍ୟଭଳି ଗୋଟିଏ ତେଜିଆ ନକ୍ଷତ୍ର କବଳରୁ ମୁକ୍ତି ଲାଭ କରି ପଦାକୁ ଚାଲି ଆସିବା ପାଇଁ ପଳାୟନ-ବେଗର ପରିମାଣ ହେଉଛି ସେକେଣ୍ଡ ପ୍ରତି ୨,୨୦୭ ମାଇଲ ।

ଆମେ ଜାଣୁ ଯେ ସୂର୍ଯ୍ୟ ଗୋଟିଏ ଜାଜ୍ୱଲ୍ୟମାନ ନକ୍ଷତ୍ର । ଯେଉଁ ଆକୃତି ଏବଂ ନକ୍ଷତ୍ରଟିର ବ୍ୟାସ ୮୬୫୦୦୦ ମାଇଲ । ବୈଜ୍ଞାନିକମାନେ ହିସାବ କରି ଜାଣିପାରିଛନ୍ତି ଯେ ସୂର୍ଯ୍ୟ ଭଳି ଯେଉଁଟିର ବ୍ୟାସକୁ ଯଦି କୌଣସି ପ୍ରକାରେ ମାତ୍ର ୩.୭ ମାଇଲ୍ ପର୍ଯ୍ୟନ୍ତ ସଂକୁଚିତ କରାଇ ଦେବା ସମ୍ଭବ ହୁଏ, ତାହା ହେଲେ ଏହାର ପଳାୟନ - ବେଗର ମାତ୍ରା ଆଲୋକର ବେଗଠାରୁ ଅଧିକ ହୋଇଯିବ । ଆଲୋକର ବେଗ ହେଉଛି ସେକେଣ୍ଡ ପ୍ରତି ୧୮୬୦୦୦ ମାଇଲ । ଯଦି କେବଳ କୌଣସି ବସ୍ତୁ ଏତେ ଅଧିକ ବେଗରେ ଗତି କରିବାକୁ ସମର୍ଥ ହୁଏ, ତାହା ହେଲେ ହିଁ ସେହି ବସ୍ତୁଟି ୩.୭ ମାଇଲ ବ୍ୟାସଯୁକ୍ତ ସୂର୍ଯ୍ୟ ଭଳି ବସ୍ତୁପିଣ୍ଡ କବଳରୁ ବାହାରକୁ ଚାଲି ଆସିପାରିବ । ମାତ୍ର ମହାମତି ଆଇନ୍‌ଷ୍ଟାଇନଙ୍କ ବିଶେଷ ଆପେକ୍ଷିକ ତତ୍ତ୍ୱାନୁଯାୟୀ କୌଣସି ବସ୍ତୁ ଆଲୋକର ବେଗସହ ସମାନ ବେଗରେ ବା ତତୋଧିକ ବେଗରେ ଗତିକରି ପାରିବ ନାହିଁ । ଏହା ପ୍ରକୃତିର ଏକ ଅଲଂଘ୍ୟ ନିୟମ । ଏଣୁ, ସୂର୍ଯ୍ୟ ସହିତ ସମାନ ବସ୍ତୁଭାର ଧାରଣ ଗୋଟିଏ ବସ୍ତୁପିଣ୍ଡର ବ୍ୟାସ ଯଦି ମାତ୍ର ୩.୭ ମାଇଲ ହୋଇଥାଏ, ତାହାହେଲେ ସେହି ବସ୍ତୁପିଣ୍ଡଠାରୁ କୌଣସି ବସ୍ତୁ ବାହାରକୁ ବାହାରି ଆସି ପାରିବ ନାହିଁ । ଏପରି କି ଆଲୋକ ମଧ୍ୟ ଏହାର ପୃଷ୍ଠଦେଶରୁ ପ୍ରତିଫଳିତ ହୋଇ ବାହାରକୁ ଆସି ପାରିବ ନାହିଁ । ଯେଉଁ ବସ୍ତୁ, ବା ଆଲୋକ ରଶ୍ମି ଏହାର ପୃଷ୍ଠ ଦେଶରେ ଆପତିତ ହେବ, ତାହାକୁ ଏହି ବସ୍ତୁ ପିଣ୍ଡଟି ଗ୍ରାସ କରିବ । ଅର୍ଥାତ୍, ଏହା ଗୋଟିଏ ଯନ୍ତା ଭଳି ବ୍ୟବହାର ଦର୍ଶାଇବ । ଆଲୋକ ରଶ୍ମି ବା ଅନ୍ୟ କୌଣସି ପ୍ରକାର ରଶ୍ମି ଏହାର ପୃଷ୍ଠ ଦେଶରୁ ପ୍ରତିଫଳିତ ହୋଇ ବାହାରକୁ ଆସି ପାରୁ ନ ଥିବାରୁ ଆମେ ଖାଲି ଆଖିରେ ବା କୌଣସି ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଏହାକୁ କୌଣସି ମତେ ଦେଖି ପାରିବା ନାହିଁ । ଏଣୁ, ଯଥାର୍ଥରେ ବୈଜ୍ଞାନିକମାନେ ଏପରି ବିଚକ୍ଷଣ ପ୍ରକୃତି ସଂପନ୍ନ ବସ୍ତୁପିଣ୍ଡକୁ ବ୍ଲାକ୍ ହୋଲ୍ ବା କୃଷ୍ଣ ଗର୍ତ୍ତ ନାମରେ ଅଭିହିତ କରୁଛନ୍ତି ।

ଆମ ସୂର୍ଯ୍ୟ ଅଭ୍ୟନ୍ତରରେ ବର୍ତ୍ତମାନ ନିଉକ୍ଲିଆର୍ ଦହନ ପ୍ରକ୍ରିୟା ଚାଲିଛି । ହାଇଡ୍ରୋଜେନ ପରମାଣୁଗୁଡ଼ିକୁ ଜାଳେଣି ରୂପେ ବ୍ୟବହାର କରି ଏହା ହିଲିଅମ ପ୍ରସ୍ତୁତ କରୁଛି ଏବଂ ଏପରି ଦହନର ପରିଣତି ସ୍ୱରୂପ ପ୍ରଚଣ୍ଡ ଶକ୍ତି ଉତ୍ପନ୍ନ ହେଉଛି । ଏହି ଶକ୍ତି ସୂର୍ଯ୍ୟର

କେନ୍ଦ୍ରାଞ୍ଚଳରୁ ଚତୁର୍ଦ୍ଦିଗକୁ ପରିବ୍ୟାପ୍ତ ହେବା ବେଳେ ଯେଉଁ ବଳ ସୃଷ୍ଟି ହେଉଅଛି, ତାହା କେନ୍ଦ୍ରାଭିମୁଖୀ ମହାକର୍ଷଣ ବଳକୁ ସମତୁଲ କରି ପାରୁଥିବାରୁ ସୂର୍ଯ୍ୟ ନିଜକୁ ବଂଚାଇ ରଖିବାକୁ ସମର୍ଥ ହୋଇଛି । ମାତ୍ର ଯେତେବେଳେ ଇନ୍ଧନ ରାଶି ଜାଳେଣି ଶେଷ ହୋଇଯିବ, ସେତେବେଳେ କେନ୍ଦ୍ରାପସାରୀ ବା ବହିର୍ମୁଖୀ ବଳର ଅନୁପସ୍ଥିତି ଯୋଗୁଁ କେବଳ ମହାକର୍ଷଣ ବଳର ପ୍ରଭାବରେ ସୂର୍ଯ୍ୟର ମୃତ୍ୟୁ ଘଟିବ । ସଙ୍କୁଚିତ ହୋଇଯାଇ ଏହା ଯେଉଁ ନାକ୍ଷତ୍ରିକ ଶବରେ ପରିଣତ ହେବ ତାହାର ବ୍ୟାସ ଅବଶ୍ୟ ୩.୭ ମାଇଲ୍‌ଠାରୁ ଯଥେଷ୍ଟ ଅଧିକ ହେବ । ଏଣୁ ସୂର୍ଯ୍ୟ ମୃତ୍ୟୁ ଲଭିବା ପରେ ବ୍ଲାକ୍ ହୋଲ୍‌ରେ ପରିଣତ ନ ହୋଇ ଗୋଟିଏ ବାମନ ତାରା ରୂପେ ପ୍ରତିଭାତ ହେବ । ସ୍ୱନାମଧନ୍ୟ ମାର୍କିନ୍ ପଦାର୍ଥ ବିଜ୍ଞାନୀ ଓପେନ୍ ହାଇମର ଜଣାଇଛନ୍ତି ଯେ ଯଦି ଗୋଟିଏ ବସ୍ତୁପିଣ୍ଡର ବସ୍ତୁତ୍ୱ ସୂର୍ଯ୍ୟଠାରୁ ୩.୨ ଗୁଣ ବା ତତୋଧିକ ହୁଏ, ତାହାହେଲେ ତାହାର ଅଭ୍ୟନ୍ତରରେ ନିଉକ୍ଲିଆର୍ ଦହନ ପ୍ରକ୍ରିୟା ଶେଷ ହୋଇଯିବା ପରେ ପ୍ରବଳ ମହାକର୍ଷଣ ବଳର ପ୍ରଭାବ ଯୋଗୁଁ ସେହି ନକ୍ଷତ୍ରର ଶବଟି ବ୍ଲାକ୍ ହୋଲ୍ ରୂପ ଧାରଣ କରିବ ।

ବ୍ଲାକ୍ ହୋଲ୍‌କୁ ତ କୌଣସି ପ୍ରକାରେ ଦେଖିବାର ସମ୍ଭାବନା ନାହିଁ । ତାହାହେଲେ ଆମେ କିପରି ଜାଣିବା ଯେ ମହାକାଶରେ ଏପରି ବସ୍ତୁପିଣ୍ଡର ଅବସ୍ଥିତି ଅଛି କି ନାହିଁ ? ବ୍ଲାକ୍ ହୋଲ୍‌ର ଅବସ୍ଥିତି ସଂପର୍କରେ ତାତ୍ତ୍ୱିକ ପଦାର୍ଥ ବିଜ୍ଞାନମାନେ ପ୍ରାକ୍‌ସୂଚନା ଯୋଗାଇଥିଲେ ମଧ୍ୟ ଏହାର ସଂଭାବ୍ୟ ଅବସ୍ଥିତି ସମ୍ପର୍କରେ ବିଶେଷଜ୍ଞମାନେ ସନ୍ଦିହାନ ହୋଇଥିଲେ । ମାତ୍ର ଏବେ ବୈଜ୍ଞାନିକମାନେ ବୁଦ୍ଧି ଖଟାଇ ଅପ୍ରତ୍ୟକ୍ଷ ମାର୍ଗରେ ଏହାର ଅବସ୍ଥିତି ସଂପର୍କରେ ନିର୍ଭର ଯୋଗ୍ୟ ପ୍ରାମାଣିକ ତଥ୍ୟ ସଂଗ୍ରହ କଲେଣି । ଆଶା କରାଯାଉଛି ଯେ ନିକଟ ଭବିଷ୍ୟତରେ ବୈଜ୍ଞାନିକମାନେ ମହାକାଶରୁ ଆହୁରି ଅନେକ ଗୁଡ଼ିଏ ବ୍ଲାକ୍ ହୋଲ୍‌ର ଆବିଷ୍କାର କରିପାରିବେ ।

ଜ୍ୟୋତିର୍ବିଜ୍ଞାନ ଜଗତର ଯେଉଁ ତାତ୍ତ୍ୱିକ ଆବିଷ୍କାରଟି ଜନମାନସରେ ଚମକ୍ ତଥା କୌତୁହଳ ସୃଷ୍ଟି କରିଥିଲା, ତାହାର ଅବସ୍ଥିତି ସଂପର୍କରେ ଠିକ୍ ସୂଚନା ମିଳିଯିବା ଦ୍ୱାରା ସଂପୃକ୍ତ

ବୈଜ୍ଞାନିକମାନଙ୍କ ତାତ୍ତ୍ୱିକ ଗବେଷଣାର ଯଥାର୍ଥତା ପ୍ରତିପାଦିତ ହୋଇଛି । ଆମେ ମୌଳିକ ବିଜ୍ଞାନର ପ୍ରଗତି ସାଧନ ପାଇଁ ନିଜ ନିଜ ପ୍ରତିଭାର ସମ୍ୟକ୍ ଉପଯୋଗ କରିବାକୁ ସଂକଳ୍ପବଦ୍ଧ ହେବା ଦ୍ୱାରା ହିଁ ସେହି ମହାନ୍ ଚିନ୍ତାନାୟକମାନଙ୍କର ସୁଯୋଗ୍ୟ ଦାୟାଦ ରୂପେ ବିଜ୍ଞାନର ଗଚ୍ଛାଧଭକୁ ପରିପୁଷ୍ଟ କରିବାକୁ ସମର୍ଥ ହେବା ।

